ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ



ଉପଦେଷ୍ଟାମଣ୍ଡଳୀ

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

ସମ୍ପାଦିକା

**ଅନସୂୟା ନନ୍ଦ**



**୬୬ ବର୍ଷ, ଦ୍ୱିତୀୟ ସଂଖ୍ୟା**
**ସେପ୍ଟେମ୍ବର, ୨୦୧୬**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**



ଯୋଗାଯୋଗ

**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
ଦୂରଭାଷ : ୯୮୬୧୦୬୪୮୯୧,
୨୪୨୨୫୯୭, ୨୪୨୦୦୭୫
email :
nandaanasuya@hotmail.com
www:odisha publication.com


ଅନ୍ୟାନ୍ୟ ବିଭାଗର ଲେଖକ--

**ଶୁଭେଂଦ୍ର ମୋହନ ଶ୍ରୀଚଂଦନ ସିଂହ, ଅଜିତାନନ୍ଦ ଗୋସ୍ୱାମୀ, ସୁଭଦ୍ରା ବେହେରା, ଇଂ ପ୍ରଭାତ ନନ୍ଦ ।**

**ଗଳ୍ପ ଓ ଜୀବନୀ**



**କବିତା**



**ଭ୍ରମଣ କାହାଣୀ**



**ଜ୍ଞାନବିଜ୍ଞାନ**



**ମନୋରଞ୍ଜନ**



## ଆମ ଚିଠି ମୁଣିରୁ

**ଦୁର୍ଗାପୁର ତାଳଚେରରୁ ଜ୍ୟୋତିରଂଜନ ବିଶ୍ୱାଳ**-- ଜୁନ୍ ମାସ ସଂସାରରେ 'ପକ୍ଷୀପ୍ରେମୀ' ପ୍ରସଂଗଟି କିଶୋର କିଶୋରୀମାନଙ୍କ ମଧ୍ୟରେ ଦୟା, କରୁଣା ଆଦି ଗୁଣ ଉଦ୍ରେକ କରିବା ସାଙ୍ଗେ ସାଙ୍ଗେ ସେମାନଙ୍କୁ ପ୍ରକୃତିପ୍ରେମୀ କରିବା ପାଇଁ ଦିଗ୍‌ଦର୍ଶନ ଦେବାରେ ସହାୟକ ହେବ ।

**ଓଡ଼ଗାଁ ନୟାଗଡ଼ରୁ ରାଜକିଶୋର ସାହୁ**-- ଏ ମାସରେ ଶିକ୍ଷକଙ୍କ ଗୁପ୍ତ ରହସ୍ୟ, ବୁଦ୍ଧି ପରୀକ୍ଷା ଓ ଚାରିପଇସା ଆୟର ଉପଯୋଗ ଖୁବ୍ ଶିକ୍ଷଣୀୟ । ବୁଦ୍ଧିପରୀକ୍ଷାର ନଂ୪(ଗ)ର ଉତ୍ତର ଭୁଲ୍ କ୍ରମେ ୨୦ ଲେଖାଯାଇଛି । ଏହାର ଠିକ୍ ଉତ୍ତର ୨୧ ହେବ ।

**ଚମ୍ପୁଆ, କେନ୍ଦୁଝରରୁ ରାସେଶ୍ୱର ମହାନ୍ତ**-- ପ୍ରତି ସଂଖ୍ୟା ସଂସାର ଏକ ଅନନ୍ୟ ରୂପରେ ପ୍ରତିଭାତ । ଚଳିତ ସଂଖ୍ୟାର ମଲାଟରେ ଡ୍ୟାନସିଂ ହାଉସ୍ ନିଶ୍ଚୟ ଏକ ଆଶ୍ଚର୍ଯ୍ୟ । 'ଝିଅଟି କାହାର ?' ବିଷୟ ଭଲ ଲାଗିଲା । ଓଡ଼ିଶାର କେତେଜଣ ବରପୁତ୍ରଙ୍କ ଆବିର୍ଭାବ ଓ ତିରୋଧାନର ଟିପ୍‌ପଣୀ ଏକ ସଂଗ୍ରହଯୋଗ୍ୟ କଥା । ବୁଦ୍ଧିପରୀକ୍ଷାର ୪(ଗ)ର ପ୍ରଶ୍ନର ଉତ୍ତର ଭୁଲ୍ କ୍ରମେ ୨୦ ହୋଇଛି, ଏହା ୨୧ ହେବ ।

**ଆନନ୍ଦପୁରରୁ ଶ୍ରୀ ରବୀନ୍ଦ୍ର ପ୍ରସାଦ ଚାନ୍ଦ**-- ଏ ମାସର 'ଭାବି ଦେଖନ୍ତୁ' ବିଷୟଟି ଭଲ ଲାଗିଲା । ଏହା ଆପଣଙ୍କର ଅତୁଟ ଦୃଢ଼ ବିଶ୍ୱାସର ଫଳ । ବିଷୟଟିରେ ବାସ୍ତବତା ଭରି ରହିଛି । --'ସଂସାର' ଓ ମୋତିରୁ ଶିଖିବାକୁ ହେଲେ
'ସଂସାର' ହଂସକୁ ପଚାର ।
ସଂସାର ସୂର୍ଯ୍ୟ ଉଦୟ ହୋଇଲେ
ତୁଟି ଯାଏନି କି ଅନ୍ଧାର !"

**ପୁରୁଣିଆ, ନୟାଗଡ଼ରୁ ରସାନନ୍ଦ ଘଡ଼େଇ**--
ସଂସାରେ ସାଇତା ଅନେକ ଜିନିଷ
ଜାଣିବା ଆମର ଧର୍ମ
ପଢ଼ି ପଢ଼ାଇବା ଜାଣି ଜଣାଇବା
ଅଟଇ ମହତ୍ କର୍ମ ।

ଚଳିତ ବର୍ଷ ଅକ୍ଟୋବର ୨୮ ତାରିଖ (ଶୁକ୍ରବାର) ଦିନ ସଂଧ୍ୟା ୬ ଘଟିକା ସମୟରେ ବାଣୀପୀଠ ଶ୍ରୀରାମଚନ୍ଦ୍ର ଭବନ, କଟକଠାରେ ଶିଶୁ-କିଶୋର ପତ୍ରିକା 'ସଂସାର'ର ୬୩ତମ ବାର୍ଷିକ ଉତ୍ସବ ଅନୁଷ୍ଠିତ ହେବ ।

ଏହି ଅବସରରେ ପ୍ରତିବର୍ଷ ପରି 'ସଂସାର'ର ୩ ଜଣ କୃତୀ ଲେଖକ ଓ ପୃଷ୍ଠପୋଷକଙ୍କୁ ସମ୍ବର୍ଦ୍ଧିତ କରାଯିବା ପାଇଁ ସ୍ଥିର ହୋଇଛି ।

ଉକ୍ତ ଉତ୍ସବକୁ ସଫଳ କରିବା ପାଇଁ 'ସଂସାର'ର ଏଜେଣ୍ଟ, ଗ୍ରାହକ, ଲେଖକ, ପାଠକ ତଥା ଶୁଭେଚ୍ଛୁ ବନ୍ଧୁମାନଙ୍କର ଉପସ୍ଥିତି ଆମର ଏକାନ୍ତ କାମ୍ୟ । **-- ସଂସାର ପରିବାର**

**ଏ ମାସ ପ୍ରଚ୍ଛଦରେ 'ଆନିମେସନ୍ ଚଳଚ୍ଚିତ୍ର-- 'ଦ ସିକ୍ରେଟ୍ ଲାଇଫ୍ ଅଫ୍ ପେଟସ୍' ଓ 'ନୀଳପଦ୍ମର ଉଦ୍ୟାନ' ବିଷୟରୁ ପ୍ରଦତ୍ତ ।**

ସଂସାର ସାଗରୁ ମିଳେ ହୀରା, ନୀଳା,
ମୋତି, ମାଣିକ୍ୟ, ବୈଦୁର୍ଯ୍ୟ
ସାଉଁଟି ଧର ହେ ଜ୍ଞାନ ଚହଟିବ
ବଢ଼ିବ ଭାଷାର ଐଶ୍ୱର୍ଯ୍ୟ ।

**ସେଣ୍ଟ ଜାଭିୟର୍ସ ହାଇସ୍କୁଲରୁ ଦତ୍ତାତ୍ରେୟ ଜେନା** (୯ମ) -- ଏ ମାସରେ ପ୍ରକାଶିତ ସମସ୍ତ ବିଷୟ ଭଲହୋଇଛି ।
ସଂସାର ପତ୍ରିକା ସବୁଠାରୁ ଅଟେ
ଓଡ଼ିଆ ଜାତିର ଗୌରବ
କାହାଣୀ, କବିତା, ବିଜ୍ଞାନ, ଜୀବନୀ
ସବୁଥିରେ ଅଛି ସୌରଭ ।
ଓଡ଼ିଆ ଭାଷାର ଅମୂଲ୍ୟ ରତନ
ସଂସାର ପତ୍ରିକା ବାଣ୍ଟୁଛି
ସେହି ଚରଣରେ କୋଟି ନମସ୍କାର
ଭକ୍ତି ଶରଧାରେ କରୁଛି ।

# ବାଟଭୁଲା ବାଘୁଣୀ

ଶ୍ରୀ ହଳଧର ପଣ୍ଡା

ପାହାଡ଼ ପାରିହେଲେ ଝାଟିଆ । କାଳିଚା, କରଡ଼ା, ଆତୁଣ୍ଡି ଲତାର ମିଶାମିଶି ପତଳା ଜଙ୍ଗଲ । ତା'ଆରପାଖକୁ ରହିଛି ମହୁଲପୋଖରୀ । ତିନି ଚାରିଟି ମହୁଲ ଗଛ ପରିବେଷ୍ଟିତ ହୋଇ ରହିଥିବାରୁ ପୋଖରୀଟିର ନାଁ 'ମହୁଲ ପୋଖରୀ' । ସେଇଠି ବାଘୁଣୀ ପାଣି ପିଏ । ସେ ଯେ ସବୁଦିନେ ସେଠାକୁ ପାଣି ପିଇବାକୁ ଆସେ, ସେ କଥା ନୁହେଁ, ଖରାଦିନେ ଜଙ୍ଗଲ ଭିତରର ସରୁ ଝରଣା, ଝୋଲା ସବୁ ଶୁଖିଗଲେ ବାଘୁଣୀ ସେଇଠିକି ଗଡ଼େ । ସେଇ ପୋଖରୀରେ ପାଣି ପିଇ ବଣକୁ ଫେରେ । ଅବଶ୍ୟ ସବୁ କାମ ଅନ୍ଧାରେ ଅନ୍ଧାରେ ସରେ । ସକାଳ ପୂର୍ବରୁ ସେ ଜଙ୍ଗଲରେ ପହଞ୍ଚି ସାରିଥାଏ ।

ଏ ବର୍ଷ ଅସହ୍ୟ ଝାଞ୍ଜିରେ ଆକ୍ତାମାକ୍ତା ହୋଇ ସେ ସେମିତି ଆସିଥିଲା । ସାଙ୍ଗରେ ଥିଲେ ଦୁଇଟି ଛୋଟ ଛୋଟ ଛୁଆ । ପେଟେ ପାଣି ପିଇଥାନ୍ତେ ଓ ଲେଉଟି ଯାଇଥା'ନ୍ତେ ନିଜ ବାଟରେ । ମାତ୍ର ଝାଟିଆ ପାର ହୋଇ ପୋଖରୀ ଜାଗାରେ ପହଞ୍ଚି ଦେଖିଲେ ପୋଖରୀ ନାହିଁ ।

ଆରେ ଏଇଠି ତ ଥିଲା ସେ କାଚକେନ୍ଦୁ ପାଣିଭରା ପୋଖରୀ, ଗଲା କୁଆଡ଼େ ? ବାଘୁଣୀ ତାଜୁବ୍ ହୋଇ ଇଆଡ଼େ ସିଆଡ଼େ ଧୁନ୍ଦାଳିଲା । ଏଣେ ଶୋଷରେ ଛୋଟ ଛୁଆଗୁଡ଼ାକ ବାଘୁଣୀ ଦେହରେ ନେସି ହୋଇଯାଉଥାନ୍ତି । ଯେପରି କହୁଥାନ୍ତି– ପାଣି କାହିଁ, ପାଣି କାହିଁ ? ତେଣେ ମହୁଲ ପୋଖରୀ ପୋତା ହୋଇ ଗୋଟେ ବଡ଼ ପଡ଼ିଆ ତିଆରି ହୋଇଛି ଆଉ ସେଇଠୁ ଲମ୍ବିଯାଇଛି ଗୋଟେ ପକ୍କା ସଡ଼କ ପାହାଡ଼ ତଳେ ଗଢ଼ିଉଠିଥିବା ସଡ଼କ ଯାଏ । ସଡ଼କର ଦୁଇ ଧାରରେ ଜଳୁଛି ମାଳମାଳ ବିଜୁଳିବତି । କୁଆଡ଼େ ବି ଟିକେ ଅନ୍ଧାର ନାହିଁ । ବାଘୁଣୀକୁ ଝଟକା ଲାଗିଲା ।

ମହୁଲ ପୋଖରୀରେ ମନଭରି ପାଣି ପିଇବାକୁ ସେ ପିଲାଙ୍କୁ ବୋଧ ଦେଇ ଦେଇ ଡାକି ଆଣିଥିଲା । ଏବେ କରିବ କ'ଣ ? ଛୁଆଙ୍କୁ ପାଣି ଆଣି ଦେବ କେଉଁଠୁ ?

ବାଘୁଣୀ ସଡ଼କ ଧାରରେ ଆଗକୁ ଆଗେଇଲା । ଏତେ ବଡ଼ ସହରରେ କେଉଁଠି ନା କେଉଁଠି ପାଣି ଟିକେ ତ ଥିବ ।  ଛୁଆମାନେ ବି ପଛରେ ଗୋଡ଼େଇ ଥାଆନ୍ତି । ହଠାତ୍ ଗୋଟେ ପାଣିଝରର କୁଳୁକୁଳୁ ଆବାଜରେ ବାଘୁଣୀ ଠିଆହୋଇଗଲା । ଏଇଠି କେଉଁଠି ନିଶ୍ଚୟ ପାଣି ଅଛି । ନଚେତ୍ ପାଣି ଝରିବାର ଶବ୍ଦ ଆସନ୍ତା କେଉଁଠୁ ? ବାଘ ଆବାଜ ଆଡକୁ ମୁହାଁଇଲା, ଛୁଆଗୁଡ଼ିକ ବି । ପାଣି ଝରୁଥିଲା ଗୋଟେ କୋଠାଘର ବାଥରୁମ୍‌ରୁ । ବାଘୁଣୀ ସେଇଠି ପାଣି ପିଇଲା । ଛୁଆମାନେ ବି ମନଭରି ପାଣି ପିଇଲେ, ଅବଶ୍ୟ ଏ ପାଣି ଲାଗୁ ନ ଥିଲା ବଣଝରଣା ପରି ମିଠା, ଶୀତଳ ଓ ସୁଆଦିଆ । ଯା' ହେଉ ପାଣି ମୁନ୍ଦେ ମିଳିଲା ତ !



ବାଘୁଣୀ ପାଣି ପିଇ ଛୁଆମାନଙ୍କୁ ଧରି ବଣକୁ ଫେରିବାକୁ ଉପକ୍ରମ କରୁଥିଲା । ହଠାତ୍ ସେ କୋଠାଘରଗୁଡ଼ିକ ଖୋଲିବାର ଶବ୍ଦ ହେଲା । ସେଥିରୁ ଜଣେ ଲୋକ ମୁହଁ ଗଳାଇ ଦେଖିନେଲା ବାଘୁଣୀ ଓ ତା'ର ଛୁଆମାନଙ୍କୁ ।

ବାଘ......ବାଘ.......ବାଘ....ଚିତ୍କାରରେ କମ୍ପିଗଲା ସହରର ସେଇ ଅଞ୍ଚଳଟି । ଏ ଶବ୍ଦ ଖେଳିଗଲା ଚାରିଆଡ଼େ । ଠେଙ୍ଗା, ବାଡ଼ି, ତେଣ୍ଟା ଧରି ଦୌଡ଼ି ଆସିଲେ ଲୋକେ । ରାସ୍ତାଘାଟ, ଘରଦ୍ୱାର, ବାରଣ୍ଡା ଆଦିରେ ଜମିଗଲେ ଲୋକଦଳ । ବାଘୁଣୀ ଫେରିଯିବାକୁ ବାଟ ପାଇଲା ନାହିଁ । ଛୁଆଗୁଡ଼ିକ ବି ଏପରି ଅଜବ ଦୃଶ୍ୟ ଦେଖି ଭୟରେ ମା'ର ଗୋଡ଼ ସନ୍ଧିରେ ଲୁଚିବାକୁ ଲାଗିଲେ । ଲୋକମାନେ ବାଘୁଣୀ ଉପରକୁ ଇଟା, ପଥର, ଗୋଡ଼ି– ଆଦି ଯାହା ପାଇଲେ ଫିଙ୍ଗିଲେ । ବାଘୁଣୀ ଡେଇଁପଡ଼ି ଲୋକଙ୍କୁ ଭୟ ଦେଖାଇବାକୁ ଗୋଡ଼ାଇଲା । ଜଣେ, ଦି'ଜଣ ବି ଘାଇଲା ହେଲେ । ତା'ସତ୍ତ୍ୱେ ବେଳକୁ ବେଳ ଲୋକଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା । ଏ ସବୁ ଦେଖି ବାଘୁଣୀ ଛୁଆଙ୍କୁ ଧରି ଗୋଟେ ଅଧାଗଢ଼ା ପୋଲର ହୋମ୍ ପାଇପ ଭିତରକୁ ପଶିଗଲା; ତଥାପି ଲୋକେ ତା'ର ପିଛା ଛାଡ଼ିଲେ ନାହିଁ । ବଡ଼ ବଡ଼ ବାଉଁଶ ଆଣି ବାଘୁଣୀକୁ ଖେଞ୍ଚିବାକୁ ଲାଗିଲେ । ଏଣେ ବାଘୁଣୀ ବି ଜୀବନରକ୍ଷା ପାଇଁ ଲୋକଙ୍କୁ ଗୋଡ଼େଇ ନେଇ ଯାଉଥାଏ ।

ବାଘୁଣୀ ଓ ଲୋକଙ୍କ ଏମିତି ଛକାପଞ୍ଝାରେ ରାତି ପାହି ସକାଳ ହୋଇଗଲା । ସହର ସାରା ଖବର ଖେଳିଗଲା ଯେ ଗୋଟେ ବାଘୁଣୀ ଓ ତା'ର ଛୁଆ ସହର ଭିତରକୁ ପଶି ଆସିଛନ୍ତି । ଏ ଖବର ଶୁଣି ପୌରସଭାର ଚେୟାର୍‌ମ୍ୟାନ୍, ପୁଲିସ୍‌ବାବୁ ଓ ଆହୁରି ଅନେକ ମାନ୍ୟଗଣ୍ୟ ବ୍ୟକ୍ତି ଏକାଠି ହୋଇଗଲେ । ଅନେକ ବିଚାର ପରେ ସ୍ଥିର ହେଲା ଯେ– ନନ୍ଦନକାନନର କର୍ମଚାରୀଙ୍କୁ ଖବର ଦିଆଯିବ । ସେମାନେ ଆସି ବାଘୁଣୀକୁ ଉଦ୍ଧାର କରିବେ ।

ସେଇଆ ହେଲା । ନନ୍ଦନକାନନର କର୍ମଚାରୀ ଆସିଲେ । ପୋଲ ଚାରିପାଖେ ରୁଣ୍ଡ ହୋଇଥିବା ଲୋକଙ୍କୁ ଆଡ଼େଇ ସେମାନେ ବାଘୁଣୀକୁ ତିନୋଟି ନିଶାଗୁଳି ବା ଟ୍ରାଙ୍କୁଲାଇଜର୍ ମାରିଲେ । ଅଳ୍ପ ସମୟ ମଧ୍ୟରେ ବାଘୁଣୀ ଅଚେତ ହୋଇଗଲା । କର୍ମଚାରୀମାନେ ବାଘୁଣୀ ଓ ତା' ଛୁଆଙ୍କୁ ଟ୍ରକରେ ପକାଇ ନନ୍ଦନକାନନ ନେଇଗଲେ । ସହରରେ ଘଣ୍ଟା ଘଣ୍ଟା ଧରି ଲାଗି ରହିଥିବା ଗହଳି ଭାଙ୍ଗିଗଲା ।

ଏଣେ ବାଘୁଣୀର ଚେତା ଫେରିଲାରୁ ସେ ଆଖି ଖୋଲି ଦେଖିଲା– ସେ ଗୋଟେ ତାର ଜାଲି ଭିଡ଼ା ଖୁଆଡ଼ରେ ଅଛି । ତା'ଆଗରେ ରହିଛି ଗୋଟେ ବଡ଼ କୁଣ୍ଡରେ ଭର୍ତ୍ତି ଭରପୂର ପାଣି । ସେଇ କୁଣ୍ଡରୁ ପାଣି ପିଇ ତା'ର ଛୁଆ ଦୁଇଟି ଗୋଡ଼ାଗୋଡ଼ି ହୋଇ ଖେଳୁଛନ୍ତି । ବାଘୁଣୀ ଜାଣିଲା ଏଇଟା ତା' ବାସସ୍ଥାନ ପାହାଡ଼ଘେରା ଅରଣ୍ୟ ନୁହେଁ– ଅଭୟାରଣ୍ୟ । ଏଣିକି ତାକୁ ଏଇଠି ରହିବାକୁ ପଡ଼ିବ ସବୁଦିନ ଓ ସବୁବେଳେ । ଅଗତ୍ୟା ସେ ପାଣିକୁଣ୍ଡ ଆଡ଼େ ମୁହାଁଇଲା ।

*ସୁଆଁପଦା, କେନ୍ଦୁଝର– ୭୫୮୦୨୧*



# ଧନ୍ୟ ହେଲା ଏଇ ଧରାଶିରୀ

ଶ୍ରୀ ହରିଶ୍ଚନ୍ଦ୍ର ହୋତା

ଅରସ୍ତୁ ନାମରେ ଥିଲେ ଜଣେ ଗୁରୁ
ସାରା ଦେଶେ ଥିଲା ଯଶ ଖ୍ୟାତି
ଗୁରୁ ନୁହେଁ ସେ ଯେ ମହାଯତି ।
ତାଙ୍କ ଶିଷ୍ୟ ଥିଲେ ଆଲେକ୍‌ଜାଣ୍ଡର
କର୍ମବୀର ସେ ଯେ ଅଟେ ଗ୍ରୀକ୍ ବୀର
ଗୁରୁ, ଶିଷ୍ୟ ଦୁହେଁ ବହୁଦୂର ପଥ
ଚାଲି ଚାଲି ଦିନେ ଯାଉଥିଲେ
ନଦୀଟିଏ ପଥେ ପାଇଥିଲେ ।
ଚଉଦିଗେ ଦୁହେଁ ବୁଲାଇଲେ ଆଖି
ପାଇଲେନି କାହିଁ କେଉଁଠି ନିରେଖି
ନିରିଜନ ସେଇ ନଈକୂଳଟିରେ
ନାଉରିଆ ଅବା ନାବଟିଏ
ପାରି ହେବେ ନଦୀ ପଥ ସିଏ ।
ଭାବିଲେ ଅରସ୍ତୁ ଗୁରୁ ରୂପେ ମୁହିଁ
ପଥ କଢ଼ାଇବି ନଦୀ ପାରି ହୋଇ
ଆସୁ ପଛେ ବଡ଼ ବିପଦ ଜୀବନେ
ଶିଷ୍ୟ ଆସିବ ମୋ ପଛ ହୋଇ
ବିପଦ ନିଶ୍ଚେ ମୁଁ ଟାଳିବଇଁ ।
ରାଜି ହେଲେ ନାହିଁ ଆଲେକ୍‌ଜାଣ୍ଡର
କହିଲେ ଗୁରୁ ହେ ଏ ତୁମେ କି କର
ଛାଡ଼ିବିନି ଜଳେ ତୁମକୁ କେବେ ହେଁ
ଆଗେ ଜଳେ ମୁହିଁ ପଶିବଇଁ
ପାରିହେବ ତୁମେ ପଛ ହୋଇ ।
ଶିଷ୍ୟ ଆଗେ ଗୁରୁ ନ ପାରିଲେ କହି
ପାରି ହେଲେ ନଦୀ ଶିଷ୍ୟ ପଛେ ରହି
ମନେ ମନେ କିନ୍ତୁ ଅସୁଖୀ ହୋଇଲେ
ଅପମାନ କଥା ଭାବି ଭାବି
ଶିଷ୍ୟକୁ ମନରେ ଗଲେ ରାଗି ।
ଜାଣିଲେ ଏକଥା ଆଲେକ୍‌ଜାଣ୍ଡାର
କହିଲେ, "ଗୁରୁ ହେ ଏ କଥା ବିଚାର
ସହସ୍ର ସଂଖ୍ୟାରେ ଆଲେକ୍‌ଜାଣ୍ଡର
ଅରସ୍ତୁ ବଞ୍ଚିଲେ ହେବେ ସୃଷ୍ଟି
ଏ କଥାକୁ ଥରେ ଦିଅ ଦୃଷ୍ଟି ।
ବୁଝିଗଲେ ଗୁରୁ ଶିଷ୍ୟ ମନ କଥା
ଗରବରେ ଉଞ୍ଚା କଲେ ନିଜ ମଥା
ଗୁରୁ ଜନମ ମୋ ହୋଇଲା ସାର୍ଥକ
ଏ ଭଳି ଶିଷ୍ୟକୁ ଲାଭ କରି
ଧନ୍ୟ ହେଲା ଏଇ ଧରାଶିରୀ ।

*ମୁକ୍ତାବଣୀ ପ୍ରକଳ୍ପ ଉ:ପ୍ରା: ବିଦ୍ୟାଳୟ, ଭାଲୁବସା, ହାଟବାଦଡ଼ା, ମୟୂରଭଞ୍ଜ- ୭୫୭୦୫୦*

## ହିତୋପଦେଶ

- ଭୟର ବିପରୀତ ନିର୍ଭୟ ନୁହେଁ, ନିର୍ଭୟ ହେଉଛି ଭୟର ମୁକାବିଲା କରିବା ଏବଂ ଭୟ ଉପରେ ପ୍ରଭୁତ୍ୱ ହାସଲ କରିବା ।
- ଜ୍ଞାନ ସଞ୍ଚୟ କରିବାରେ ଉତ୍ତମ ସୁଧ ମିଳେ ।



# ଜୟାଙ୍କ ଅଜବ ଅଭିଯାନ

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

ତାଙ୍କ ନାଆଁ ପି.ଏସ୍. ଜୟା । ବୟସ ୨୬ । ଘର କେରଳ ରାଜ୍ୟର କୋଚି ସହରରେ । ସେ ଜଣେ ଭାରତନାଟ୍ୟମ୍ ନୃତ୍ୟାଙ୍ଗନା । ଜୟା ଆରମ୍ଭ କରିଛନ୍ତି ଏକ ଅଜବ ଅଭିଯାନ । କ'ଣ ସେହି ଅଭିଯାନ ? ତାହା ପୁଣି ଅଜବ କେଉଁଥି ପାଇଁ ?

ଅଭିଯାନଟିକୁ ସେ ଆରମ୍ଭ କରିଥିଲେ ଏଇ ୨୦୧୬ ମସିହା ଜାନୁଆରୀ ୨୬ ତାରିଖରୁ । ଏହି ଅଭିଯାନ ବା ଆନ୍ଦୋଳନକୁ ସେ ୧୨୫ ଦିନ ଧରି ଚାଲୁ ରଖିବା ନିମନ୍ତେ ସ୍ଥିର କରିଛନ୍ତି । ଅଭିଯାନ ଦ୍ୱାରା ହିଁ ସମାଜ ତଥା ଜନସାଧାରଣଙ୍କୁ ଏକ ସୁନ୍ଦର ବାର୍ତ୍ତା ଦେବା ତାଙ୍କର ଉଦ୍ଦେଶ୍ୟ; ମାତ୍ର ବାର୍ତ୍ତାଟି କଅଣ ?

ଦେହର ଗୋରା ରଙ୍ଗକୁ ଆମ ସମସ୍ତଙ୍କର ପସନ୍ଦ । ପିଲାଟିଏ ଜନ୍ମ ହୋଇ ସାରିବା ପରେ ସେ ଗୋରା ହୋଇଛି କି କଳା ହୋଇଛି, ଆମେ ଆଗେ ଏହି ଖବର ନେଇଥାଉ । ଝିଅ ପାଇଁ ଜ୍ୱାଇଁ ଖୋଜିବାବେଳେ କି ପୁଅ ପାଇଁ କନ୍ୟା ଖୋଜିବା ବେଳେ ସେ ଗୋରା କି କଳା ଆଗେ ଏହି ପ୍ରଶ୍ନଟିକୁ ପଚାରି ବସୁ । ପୁଅ କି ଝିଅର ରଂଗ କଳା ହୋଇଥିଲେ ବାହାଘର ପ୍ରସ୍ତାବ ଭାଙ୍ଗିଯିବାର ଅନେକ ନଜିର ରହିଛି । ଆମ ଭିତରୁ ଅନେକ ଲୋକଙ୍କ ଧାରଣା ଯେ ଯାହାର ରଙ୍ଗ ସଫା, ସେ ଦେଖିବାକୁ ସୁନ୍ଦର; ଯାହାର ରଙ୍ଗ ମଇଳା ସେ ବାନ୍ଦର । ହେଲେ ଏପରି ଧାରଣାଟା କ'ଣ ଠିକ୍ ? ରଙ୍ଗ ତୋଫା ଗୋରା ହୋଇ ଅସୁନ୍ଦର ପୁଅ ବି ଅଛନ୍ତି; ରଙ୍ଗ ତୋଫା ଗୋରା ହୋଇ ବି ଅଛନ୍ତି ଅସୁନ୍ଦରୀ ଝିଅ । ଆମ ଭିତରୁ କେହି ବି ନିଜ ଦେହର ରଙ୍ଗ ବାଛି ନ ଥାଏ । ଏହି କାମ କରିଥାଏ ପ୍ରକୃତି । ଦେହର ରଙ୍ଗ ପାଇଁ ଦାୟୀ ହେଉଛି ଆମ ଜୀବକାଷରେ ରହିଥିବା ଜିନ୍ ।

ଗୋରା ରଙ୍ଗ ପ୍ରତି ଆମର ଏପରି ଆକର୍ଷଣ ଜୟାଙ୍କ ମନରେ ଖୁବ୍ ଦୁଃଖ ଦେଲା । ସେ ନିଜେ କାଳୀ ନୁହନ୍ତି, ଗୋରୀ । ହେଲେ ଆମ ସମସ୍ତଙ୍କୁ ଚେତେଇଦେବା ଉଦ୍ଦେଶ୍ୟରେ ତାଙ୍କ ମନକୁ ଆସିଗଲା ଏକ ଅଦ୍ଭୁତ ଖିଆଲ ।

ଜାନୁଆରୀ ୨୬ ତାରଖ । ଜୟା ସକାଳେ ବିଛଣା ଛାଡ଼ି ନିଜର ନତ୍ୟକର୍ମ ସାରିଦେଲେ । ତା'ପରେ ନିଜ ଦେହ ସାରା ମାଖି ପକାଇଲେ କଳାରଙ୍ଗ । ଦେହରେ ଇଞ୍ଚେଟିଏ ବି ଖାଲି ଜାଗା ରଖିଲେନି । ବାସ୍, ଘରୁ ବାହାରି ପଡ଼ିଲେ ନିଜର ନିତିଦିନଆ କାମରେ ।

ତାଙ୍କର ଏପରି ରୂପ ଦେଖି ତାଙ୍କ ମାଆ ଓ ଭାଇ ଖୁବ୍ ଡରିଗଲେ । ସେମାନେ ଭାବିନେଲେ ଯେ ଜୟାର ହୋଇଛି କୌଣସି ଚର୍ମରୋଗ । ପୁଣି ରୋଗଟା ନିଶ୍ଚୟ ଖୁବ୍ ଗୁରୁତର । ନୋହିଲେ ସିଏ କାହିଁକି ଅବା ଚମ ଉପରେ ଟିକିଏ ବୋଲି ବି ଜାଗା ନ ଛାଡ଼ି ବୋଳି ପକେଇଛି କଳା ରଙ୍ଗ । ଏ ଦୁହେଁ ଖୁବ୍ ଡରିଯାଇ ଜୟାଙ୍କ

ପାଖକୁ ଗଲେନି । ଜୟା ସବୁକଥା ବୁଝେଇଦେବା ପରେ ଜୟାଙ୍କୁ ବାହାବା ଦେଲେ । ଏପରକି ତାଙ୍କ ଚର୍ମକୁ ରଂଗେଇବାକୁ ସାହାଯ୍ୟ କଲେ ମଧ୍ୟ ।

ହେଲେ ଏ ସମ୍ପର୍କରେ ଜୟାଙ୍କ ଅନୁଭବ କଅଣ ? ସେ କହନ୍ତି, "ମୋତେ ଯିଏ ଦେଖୁଛି, ମୋତେ ଆଗେ ପଚାରି ବସୁଛି, ମୁଁ ଏମିତି କରିଛି କାହିଁକି ?" ମୁଁ ସେମାନଙ୍କ କଳାଗୋରା ଧାରଣା ବିଷୟରେ ବୁଝେଇ-ଦେଉଛି । ମୋ କଥା ଶୁଣି ଅନେକ ମୋତେ ଉପହାସ କରୁଛନ୍ତି, ଘୃଣା ବି କରୁଛନ୍ତି । ପୁଣି ଅନେକେ ମଧ୍ୟ ମୋର ଏ କାମକୁ ଖୁବ୍ ତାରିଫ୍ କରୁଛନ୍ତି । କେହି କେହି ବି ମୋ ଆଗରେ ବଖାଣି ବସୁଛନ୍ତି କଳା ହୋଇଥିବା ଯୋଗୁ ସେମାନଙ୍କ ଦୁଃଖକର ଅଭିଜ୍ଞତାର କଥା । ବିଶେଷ କରି ଯେଉଁମାନେ ଗରିବ ଓ ଚାକରଚାକରାଣୀ କି ଛୋଟକାଟିଆ କାମଧନ୍ଦା କରୁଛନ୍ତି, ସେମାନଙ୍କ ରଂଗ କଳା ହୋଇଥିଲେ ଶିକ୍ଷିତ ସମାଜ ସେମାନଙ୍କୁ ବଡ଼ ଘୃଣା ଚକ୍ଷୁରେ ଦେଖୁଛନ୍ତି ।

ଦିନକର ଅଭିଜ୍ଞତା ସମ୍ପର୍କରେ ଉଲ୍ଲେଖ କରିବାକୁ ଯାଇ ସେ କହିଛନ୍ତି, "ମୁଁ ଦେହସାରା କଳା ବୋଲି ହୋଇ ଯାଉଥିଲି । ବସ୍ ଭିତରେ ଦେଖି ଜଣେ ବୟସ୍କା ମହିଳା ମୋତେ 'ପାଗଳୀ' ବୋଲି ମନ୍ତବ୍ୟ ଦେଇଥିଲେ । ମୋତେ ପଚାରିଲେ, "ତୋ'ର କଅଣ ମୁଣ୍ଡ ଖରାପ ହୋଇଯାଇଛି କି ? ମୁଣ୍ଡ ବିଗିଡ଼ି ଯାଇ ନ ଥିଲେ କିଏ ଅବା ନିଜକୁ ଅସୁରୁଣୀ ଭଳି କରି ସହର ସାରା ବୁଲୁଥା'ନ୍ତା ?"



ଜୟା ଆମ ସମସ୍ତଙ୍କୁ ପଚାରିଛନ୍ତି, "ଆଚ୍ଛା, କଳାଟା କଅଣ ଅଶୁଭ ? କଳା ରଙ୍ଗ କଅଣ ଅଛୁଆଁ ? କଳାରଂଗ କଅଣ ଆମ ପାଇଁ ଦୁର୍ଭାଗ୍ୟକୁ ଡାକି ଆଣିଥାଏ ? ଜନସାଧାରଣଙ୍କୁ ସଚେତନ କରିବା ଉଦ୍ଦେଶ୍ୟରେ ହିଁ ମୁଁ କଳାବିଦ୍ୟା ବା ଆର୍ଟକୁ ଅବଲମ୍ବନ କରିଛି । କାରଣ କଳାବିଦ୍ୟାଟି ପ୍ରତି ଲୋକଙ୍କର ଅଶେଷ ଆଦର ରହିଛି । ସମାଜରେ ରହିଥିବା ଅନେକ ଭୁଲ୍ ଧାରଣାକୁ ଦୂର କରିବା ନିମନ୍ତେ କଳାବିଦ୍ୟାର ସାହାଯ୍ୟ ନିଆଯାଇପାରିବ ।"

ସେ ପୁଣି କହିଛନ୍ତି, "ଗୋରା ଚମ ପ୍ରତି ଆମ ଲୋକଙ୍କ ଏପରି ଅସ୍ୱାଭାବିକ ଆକର୍ଷଣ କାହିଁକି ? ଗୋରା ରଙ୍ଗ ପ୍ରତି ଆମର ଏତେ ବେଶୀ ପସନ୍ଦ ଯେ ସିନେମା-ଥିଏଟର୍-ନାଟକରେ ଆମେ ଗୋରା ପୁରୁଷଙ୍କୁ ମୁଖ୍ୟ ଅଭିନେତା ଓ ଗୋରୀ ମହିଳାଙ୍କୁ ମୁଖ୍ୟ ଅଭିନେତ୍ରୀ ଭାବରେ ନିର୍ବାଚନ କରିଥାଉ । କଳାରଙ୍ଗର ପୁରୁଷ ଓ ମହିଳାଙ୍କୁ ସାଧାରଣତଃ ବାଛିଥାଉ ଖଳନାୟକ ଓ ଖଳନାୟିକା ଭାବେ ଅଭିନୟ କରିବା ପାଇଁ । ଏପରିକି ପୁରାକାଳର ଅସୁର ଓ ଦାନବ ଗୋରା ହୋଇଥିବାର କୌଣସି ନଜିର ନାହିଁ । ତଥାକଥିତ ଅସୁର ଅସୁରୁଣୀମାନେ ସମସ୍ତେ ରହି ଆସିଥିଲେ କଳା !

"କେବଳ ସେତିକି ନୁହେଁ: ଶାସ୍ତ୍ରୀୟ ନୃତ୍ୟରେ ମଧ୍ୟ ଗୋରା ରଂଗକୁ ବେଶୀ ପ୍ରାଧାନ୍ୟ ଦିଆ ହୋଇ ଆସୁଛି । ଆପଣ କାଳୀ ନର୍ତ୍ତକୀଙ୍କୁ କେବେ ଦେଖିଛନ୍ତି କି ? ନୃତ୍ୟ ପ୍ରଦର୍ଶନ କରିବା ପୂର୍ବରୁ ସେମାନଙ୍କ ଦେହ, ହାତ, ପାଦକୁ ତୋଫା ଗୋରା କରିବା ନିମନ୍ତେ ବହଳିଆ ପ୍ରସାଧନ ସାମଗ୍ରୀ ବ୍ୟବହାର କରାଯାଇଥାଏ । ସେମାନଙ୍କୁ ଦେଖିଲେ

ସେମାନଙ୍କ ଦେହର ପ୍ରକୃତ ରଙ୍ଗକୁ ଠଉରେଇବା କି ସେମାନଙ୍କୁ ଚିହ୍ନିବା ହୋଇଉଠେ କାଠିକର ପାଠ ।''

ଜୟା କେବଳ ସେତିକିରେ ସନ୍ତୁଷ୍ଟ ରହିନାହାନ୍ତି । ସେ ଦେହସାରା କଳା ମାଖି ହୋଇ ଭାରତନାଟ୍ୟମ୍ ନୃତ୍ୟ ପ୍ରଦର୍ଶନ କରିବା ନିମନ୍ତେ ଇଚ୍ଛା ପୋଷଣ କରିଛନ୍ତି । ନିଜର କଳାମଖା ଶରୀରରେ ବିଭିନ୍ନ ଭଙ୍ଗୀ ପ୍ରଦର୍ଶନ କରି ଓ ପ୍ରତ୍ୟେକର ଫଟୋ ଉଠେଇ ଗୋଟିଏ କ୍ୟାଲେଣ୍ଡର ପ୍ରସ୍ତୁତ କରିବା ମଧ୍ୟ ତାଙ୍କର ଲକ୍ଷ୍ୟ ।

ସେ ନିଜର ଅଭିଜ୍ଞତାକୁ ନେଇ ଏକ ଭିଡିଓ କରିବା ଓ ଭିଡିଓଟିର ବ୍ୟାପକ ପ୍ରସାର କରିବା ନିମନ୍ତେ ମନସ୍ଥ କରିଛନ୍ତି । ତାଙ୍କର ଆଶଙ୍କା, ଯେ ଦେହର ଗୋରା ରଙ୍ଗ ପ୍ରତି ଜନସାଧାରଣଙ୍କର ଯେପରି ଆକର୍ଷଣ ରହିଛି, ସେହି ମନୋଭାବର ପରିବର୍ତ୍ତନ ନ ଘଟିଲେ ସମାଜର ଅବନତିକୁ ଆଦୌ ରୋକି ହେବନାହିଁ ।

ଦେହର କଳାଗୋରା ରଙ୍ଗ ସମ୍ପର୍କରେ ଜନସାଧାରଣଙ୍କ ମନରେ ରହିଥିବା ଭୁଲ୍ ଧାରଣା ଦୂର କରିବା ନିମନ୍ତେ ନିଜ ଦେହକୁ କଳାରଂଗରେ ରଂଗେଇ ଆତଯାତ ହେବା ଜୟାଙ୍କର ଏକ ଅଭିନବ ଆନ୍ଦୋଳନ ନିଶ୍ଚୟ । ତାଙ୍କର ଏଭଳି ଏକ ନୂଆଧରଣର କାର୍ଯ୍ୟ ଦ୍ୱାରା ଯଦି କିଛି ମାତ୍ରାରେ ଜନସଚେତନତା ସୃଷ୍ଟି ହୋଇପାରେ, ତେବେ ତାଙ୍କର ଉଦ୍ଦେଶ୍ୟ ସଫଳ ହେବ ।

*'ଅଭୀପ୍ସା', ସେକ୍ଟର- ୬, ପ୍ଲଟ୍.ନଂ- ୧୧୩୧, ଅଭିନବ ବିଡ଼ାନାସୀ, କଟକ- ୭୫୩୦୧୪*

---

# ବୁଦ୍ଧିଆ ବୁଢ଼ା ହଂସ

ଶାନ୍ତି ସାମଲ

ଗୋଟିଏ ଜଙ୍ଗଲ ମଧ୍ୟରେ ବିରାଟ ଗଛଟିଏ ଥିଲା । ଗଛଟି ଖୁବ୍ ଉଚ୍ଚ ଥିଲା । ଅନେକ ଡାଳପତ୍ର ମେଲି ଖୁବ୍ ଗହଳ ଥିଲା । ସେଥିରେ ଅନେକ ହଂସ ରହୁଥିଲେ । ଗହଳ ଡାଳପତ୍ର ଭିତରେ ସେମାନେ ଖୁବ୍ ଖୁସିରେ ଥିଲେ । ବୁଦ୍ଧିଆ ବୁଢ଼ା ହଂସଟି ସବୁବେଳେ ସେମାନଙ୍କ ସାଙ୍ଗରେ ରହି ତାଙ୍କର ଭଲମନ୍ଦ ବିଷୟ ବୁଝୁଥିଲା ।

ଥରେ ବୁଢ଼ା ହଂସଟି ଦେଖିଲା ଗଛମୂଳେ ଗୋଟିଏ କଅଁଳ ଲତା ଡାଳପତ୍ର ମେଲି ଗଛରେ ଗୁଡ଼େଇ ହେଉଛି । ସେ ଅନ୍ୟ ହଂସମାନଙ୍କୁ କହିଲା, "ଗଛ ତଳେ ଲଟାଟି କିପରି ଡାଳପତ୍ର ମେଲି ବଢୁଛି ଦେଖୁଛ ତ ?" ଅନ୍ୟ ହଂସମାନେ କହିଲେ, "ହଁ, ଖୁବ୍ ସୁନ୍ଦର ଭାବରେ ଲଟାଟି ବଢୁଛି ।" ବୁଢ଼ା ହଂସଟି କହିଲା, "ଲଟାଟି ସୁନ୍ଦର ହେଲେ କ'ଣ ହେବ । ସେ ବଢ଼ି ବଢ଼ି ଗୋଟିଏ ମଜଭୁତ୍ ଦଉଡ଼ି ଭଳି ହୋଇଯିବ । ଯେ କୌଣସି ଶିକାରୀ ସେଇ ଲଟା ସାହାଯ୍ୟରେ ଗଛ ଉପରକୁ ଧରି ଧରି ଚଢ଼ିଆସି ଆମକୁ ମାରିପାରିବ । ତେଣୁ ଲଟାଟି ଛୋଟ ଥିବା ସମୟରୁ ହିଁ



ତାକୁ ନଷ୍ଟ କରିଦିଅ ।" ହଂସମାନେ ସବୁ ଶୁଣିଲେ ଓ ବୁଝିଲେ । କିନ୍ତୁ ଆଜି କରିବେ, କାଲି କରିବେ ହୋଇ ଲଟାଟିକୁ ନଷ୍ଟ କଲେନି । କିଛି ଦିନ ପରେ ଲଟାଟିର କଥା ସମସ୍ତେ ଭୁଲି ବି ଗଲେ ।

ଲଟାଟି ଧୀରେ ଧୀରେ ବଢ଼ି ଖୁବ୍ ମଜଭୁତ୍ ଦଉଡ଼ି ପରି ହୋଇଯାଇଥାଏ । ଦିନେ ଜଣେ ଶିକାରୀ ଜଙ୍ଗଲରେ ବୁଲି ବୁଲି ଏଇ ଗଛ ପାଖକୁ ଆସିଲା । ଗଛ ଉପରେ ହଂସମାନଙ୍କୁ ଦେଖି ତାଙ୍କୁ କିପରି ଧରା ଯାଇପାରିବ, ସେ ବିଷୟରେ ଯୋଜନା କଲା । ଦୁଇ ଚାରି ଦିନ ପରେ ବଡ଼ ଜାଲଟି ଆଣି ଲଟା ଉପରେ ଚଢ଼ି ଚଢ଼ି ପ୍ରତ୍ୟେକ ଡାଳରେ ବାନ୍ଧିଦେଲା । ସେଦିନ ପକ୍ଷୀଗୁଡ଼ିକ ଯେତେବେଳ ସଂଜରେ ଫେରିଲେ, ଅଜାଣତରେ ସମସ୍ତେ ଜାଲରେ ପଡ଼ିଗଲେ । ବୁଢ଼ା ହଂସଟି ବ୍ୟସ୍ତ ହେଲା । ପକ୍ଷୀମାନଙ୍କୁ ଲଟା ବିଷୟରେ କହିଲା, "ମୂଳରୁ ଲଟାଟିକୁ ନଷ୍ଟ କରିଦେଇଥିଲେ ଶିକାରୀ କେବେ ବି ଜାଲ ବାନ୍ଧି ପାରି ନ ଥା'ନ୍ତା ।"



ବୁଢ଼ା ହଂସ ଏବେ ଅନ୍ୟ ହଂସମାନଙ୍କୁ କହିଲା, "ସକାଳେ ଯେତେବେଳେ ଶିକାରୀ ଆସି ଜାଲ ଉଠାଇବ ଓ ପକ୍ଷୀମାନଙ୍କ ଧରିବାକୁ ଚେଷ୍ଟା କରିବ, ସେତେବେଳେ ସବୁ ହଂସ ମରିଗଲା ପରି ପଡ଼ି ରହିବ । ଶିକାରୀ ମଲା ହଂସମାନଙ୍କୁ ତଳକୁ ଫୋପାଡ଼ିଦେବ । ତଳେ ପଡ଼ିଲା ପରେ ବି ସବୁ ହଂସ ମଲା ପରି ତଳେ ପଡ଼ି ରହିବ । ଯେତେବେଳେ ସବୁ ହଂସକୁ ଶିକାରୀ ତଳକୁ ପକାଇ ସାରିବ, ସେତେବେଳେ ସମସ୍ତେ ଏକାସାଙ୍ଗରେ ଉଡ଼ି ଉଡ଼ି ଚାଲିଯିବ ।"

ପରଦିନ ଶିକାରୀ ଆସି ଗଛରେ ଚଢ଼ି ଦେଖିଲା ସବୁ ହଂସ ମରିଯାଇଛନ୍ତି । ସେ ଗୋଟିଏ ଗୋଟିଏ ହଂସକୁ ଜାଲରୁ ବାହାର କରି ତଳକୁ ପକାଇଲା । ଯେତେବେଳେ ଶେଷ ହଂସଟିକୁ ତଳକୁ ପକାଇଦେଲା, ସେତେବେଳେ ସବୁ ହଂସ ଏକା ସାଙ୍ଗରେ ଉଡ଼ି ଉଡ଼ି ଚାଲିଗଲେ । ଶିକାରୀଟି ଜାଲ ଧରି ତଳକୁ ଓହ୍ଲାଇଲା ବେଳକୁ ଗୋଟିଏ ବି ହଂସ ନ ଥିଲେ । ସେମାନେ ନିଜ ନିଜ ଭିତରେ କଥାବାର୍ତ୍ତା କଲେ ଯେ ଆଉ କେବେ ବି ସେମାନେ ବୁଢ଼ା ହଂସ କଥାକୁ ଅମାନ୍ୟ କରିବେ ନାହିଁ ।

*ଅରୁଣୋଦୟ ନଗର, କଟକ- ୧୨*

---



ବାପା– ପୁଅ ! ମୁଁ ସ୍କୁଲରେ ପଢ଼ିଲାବେଳେ ଇତିହାସ ବିଷୟକୁ ଖୁବ୍ ଭଲପାଉଥିଲି ଏବଂ ଇତିହାସରେ ମୋର ଭଲ ନମ୍ବର ଆସୁଥିଲା । ତୁ ଇତିହାସରେ ଏତେ କମ୍ ନମ୍ବର ରଖିଛୁ !

ପୁଅ– ବାପା ! ଆପଣ ପଢୁଥିଲାବେଳେ ୫୦ବର୍ଷ ପୂର୍ବର ଇତିହାସ ପଢୁଥିବା ଯୋଗୁ ବିଷୟ କମ୍ ଥିଲା- ସେଥିପାଇଁ ବେଶି ନମ୍ବର ମିଳୁଥିଲା । ଏବେ ୫୦ବର୍ଷର ଅଧିକ ଇତିହାସ ବିଷୟ ଆମକୁ ପଢ଼ିବାକୁ ପଡୁଛି । ଏତେ ଅଧିକ ମନେ ରଖିବା କଷ୍ଟ, କମ୍ ନମ୍ବର ମିଳୁଛି ।

**--ଡା. ଅଜିତାନନ୍ଦ ଗୋସ୍ୱାମୀ,** କଟକ-୧୨

# କୁଂଫୁ ମାଷ୍ଟର ଚେତ୍-ଲି

ବି. ନିରୁପମା

ଚହଳ ପଡ଼ିଯାଇଛି ଗାଆଁରେ । ଗତ କିଛି ବର୍ଷ ଧରି ଆଦୌ ଖୋଜଖବର ନ ଥିବା ଚଇତୁ– ଏବେ ଫେରିଆସିଛି । କଳା ମଚ୍ ମଚ୍ ସୁଟ୍-ବୁଟ୍ ସହିତ ସମାନ ରଙ୍ଗର ଚଷମା, ଘଡ଼ି ପରିହିତ ଜଣେ ନବୀନ ଯୁବକ ପଛରେ ସାଇ ପିଲାଙ୍କର ପଲଟଣ ।

ରୋଷେଇବାସ, ବାସନମଜା, ପାଣିକଢ଼ା ଆଦି ଘର କାମରେ ଲାଗିଥିବା ମାଆ, ଖୁଡ଼ି, ଦେଢେଇ, ବାଡ଼ିବଗିଚାରେ ଘାସ କାଟୁଥିବା କାକା, ବଡ଼ବାପାଙ୍କ ସମେତ ପିଣ୍ଡାରେ ବସି ଦୁଃଖସୁଖରେ ମଜ୍ଜିଯାଇଥିବା ବୁଢ଼ୀ ଆଈମାନେ ନିଜ ନିଜ କାର୍ଯ୍ୟରୁ ଘଡ଼ିଏ ବିରତ ହୋଇ ଝପଟି ଆସି ନିରେଖି ଚାହିଁଲେ । ଗାଆଁଦାଣ୍ଡରେ ହଲି, ଦୋହଲି ସୁସୁରି ବଜେଇ ଯାଉଥିବା ଜଣେ ଯୁବକ ହଠାତ୍ ଆଣ୍ଠେଇ ପଡ଼ି ଦୁଇ ହାତକୁ ଆଗକୁ ବିସ୍ତାର କରି ପିଲାମାନଙ୍କୁ ଅଦ୍ଭୁତ ହସ୍ତଚାଳନାର ଝଲକ ଦେଖାଇବା ସହିତ ନାନା କଥା ବଖାଣି ଚାଲିଥାଏ ।

"ଚଇତୁ କିରେ ! ଏତେ ଦିନ ଯାଏ ତୁ କେଉଁଠି ଥିଲୁରେ ବାପା ? ନିଧିଭାଇ ନାତି ନାତି ବୋଲି ତୋତେ କେତେ ଝୁରିଚି ! ଏବେ ତା'ର ଆଶା ପୂରିଲା ।" ଗାଈ ଆଗରେ ପାଳଗଣ୍ଡାଏ ପକାଇ ଦେଉ ଦେଉ ଘର ସାମନାରେ ଯାଉଥିବା ଯୁବକଟିକୁ ପଚାରିଦେଲେ ବଟଅଜା ।

"କିଏ ? ଓଃ, ବଟ ଗ୍ରାଣ୍ଡପା !" ଟିକିଏ ଦୋ'-ଦୋ'ପାଞ୍ଚ ହୋଇ ଯୁବକଟି ଉତ୍ତରଦେଲା, "ଆଇ ଆମ୍ ନଟ୍ ଚଇତୁ । ମାଇ ନେମ୍ ଇଜ୍ ଚେତ୍-ଲି । ମାଷ୍ଟର ଚେତ୍-ଲି ।"

ବିସ୍ମିତ ବଟଅଜା ଢିମା ଢିମା ଆଖିରେ ତା ମୁହଁକୁ ଚାହିଁଲେ । "ଆରେ ଏମିତି ହାଁଟା କରି ଚାହିଁଛ କ'ଣ ? ବୁଝିପାରୁନା କି ? ଶୁଣ ଗ୍ରାଣ୍ଡ୍ ପା, ମୁଁ ଏ ଗାଆଁ ଛାଡ଼ିବା ପରେ ସିଧା ଚାଇନା ପଳେଇଗଲି । ସେଇଠି ମହାଗୁରୁ ବ୍ରୁସ୍-ଲିଙ୍କ ଗୁରୁକୁଳରେ ରହି କୁଂଫୁର ମହାନ୍ କଳାସବୁ ସାଧନ କରିଛି ।"

ଆଣ୍ଠେଇପଡ଼ି ବାମ ପାଦ ସାମନାରେ ଡାହାଣପାଦ ଦ୍ୱାରା ଅର୍ଦ୍ଧବୃତ୍ତାକାର ରେଖା ଟାଣୁ ଟାଣୁ ଚଇତୁ ବର୍ଣ୍ଣନା କରୁଥିଲା ।

ପୁନର୍ବାର ହାତ ଘୂରେଇ ଶୂନ୍ୟକୁ ଗୋଇଠା ମାରିବାର ଅଭିନୟ କରି ସେ ଜଣେଇଲା, "କୁଂଫୁ କୌଶଳରେ ଅଦ୍ଭୁତ ପାରଦର୍ଶିତା ଦେଖି ସ୍ୱୟଂ ମହାଗୁରୁ ବ୍ରୁସ୍-ଲି ପା' ମୋର ନାମକରଣ କରିଛନ୍ତି ମାଷ୍ଟର ଚେତ୍-ଲି । ଜାଣିଚ ଜ୍ୟାକି ଚାନ୍ ଆଉ ଜେଟ୍-ଲି ବି ମୋ ପାଖରୁ ଫାଇଟିଂ ଶିଖିବାକୁ ଅନୁରୋଧ କରୁଥିଲେ । ହେଲେ ମାଟି ମାଆର ମମତାକୁ ଭୁଲି ମୁଁ ରହିଯାଇଥାନ୍ତି କେମିତି ! ଫେରି ଆସିଲି । ଏଥର ଏଇଠି ରହିବି । ଗାଆଁ ପିଲାଙ୍କୁ କୁଂଫୁ କୋଚିଂ ଦେବି ।"

ବଟଅଜାଙ୍କ ସମେତ ଉପସ୍ଥିତ ଗାଆଁର ଆଈ-ବୁଢ଼ୀ, କାକା, ବଡ଼ବାପା, ଖୁଡ଼ି, ଦେଢେଇମାନେ ଏ କଥା ଶୁଣି କ'ଣ ବୁଝିଲେ କେଜାଣି ଡବ ଡବ କରି ଇଏ ତା ମୁହଁକୁ, ସିଏ ୟା ମୁହଁକୁ ଖାଲି ଚାହୁଁଥା'ନ୍ତି ବାରମ୍ବାର ।

ଅସଲ କଥାଟା ହେଲା, ଗାଆଁଗହଳରେ ଏ ଦରପାଚୁଆ ମଣିଷଗୁଡ଼ାକ ଚଇତୁ ବଖାଣୁଥିବା କୁଂଫୁର ମାହାତ୍ମ୍ୟ ବା ବୁଝନ୍ତେ କିପରି ! ଆଜିକାଲିର କିଶୋର, କିଶୋରୀ ଆଉ ଯୁବସମାଜ ସିନା ଦେଶବିଦେଶର ଖବର

ରଖୁଛନ୍ତି । ଟିଭିରେ, ଭିଡିଓରେ ସିନେମା ଦେଖୁଛନ୍ତି; ବ୍ରୁସ୍-ଲି, ଜେଟ୍-ଲି, ଜ୍ୟାକି ଚାନ୍‌ଙ୍କୁ ପର୍ଦାରେ ଚିହ୍ନୁଛନ୍ତି । ପୁଣି କଂଫୁ, କରାଟେର ଅବିଶ୍ୱସନୀୟ କଳାକୌଶଳ ଦେଖି ଚମତ୍କୃତ ହେଉଛନ୍ତି । ସେଇଥିପାଇଁ ଚଇତୁର କଥା ଶୁଣି ଅନ୍ୟମାନେ ଅବିଶ୍ୱାସରେ ମୁହଁ ବୁଲାଇଦେବା ବେଳକୁ ଗାଆଁ ପିଲାଏ କୁଂଫୁ ଶିଖିବାର ସୁଲଭ୍ୟ ସମ୍ଭାବନାକୁ କଳ୍ପନା କରି ଆନନ୍ଦରେ ଲଗାଇଦେଲେ କୋଳାହଳ । କିଛି ସମୟ ଭିତରେ କଥାଟା ଗାଆଁ ସାରା ପ୍ରଘଟ ହୋଇଗଲା ।

ଦୁଇଟା ଦିନ ନ ଯାଉଣୁ ଚଇତୁ ଓରଫ୍ ମାଷ୍ଟର ଚେତ୍-ଲି କେବଳ ପିଲାଙ୍କ ଭିତରେ କାହିଁକି, ଗ୍ରାମଯୁବକଙ୍କ ମଧ୍ୟରେ ବି ଆକର୍ଷଣ ଓ ଆଲୋଚନାର କେନ୍ଦ୍ରବିନ୍ଦୁ ପାଲଟିଗଲା । ପିଲାଏ ସ୍କୁଲ ସାରି ଖେଳିବାକୁ ନ ଯାଇ ଚଇତୁଠାରୁ କୁଂଫୁ ଶିଖିବାକୁ ଧାଡ଼ି ବାନ୍ଧିଲେ । ଆଉ ଯେତିକ ଶିଖିଲେ, ସେତକ ସାଙ୍ଗମାନଙ୍କ ମେଳରେ ପ୍ରଦର୍ଶନ କରିବାକୁ ଆଦୌ କୁଣ୍ଠିତ ହେଲେନାହିଁ । ଅଳ୍ପଦିନ ଭିତରେ କୁଂଫୁ ଓ ମାଷ୍ଟର ଚେତ୍-ଲି ଉଭୟ ପ୍ରସିଦ୍ଧ ହୋଇଗଲେ ।



ମଲ୍ଲି ଫୁଟିଲେ ଚଉଦିଗ ମହକେଇଦେବା ପରି ଚଇତୁର ଅଦ୍ଭୁତ କୁଂଫୁ ବିଦ୍ୟା ଗ୍ରାମର ସୀମା ଅତିକ୍ରମ କରି ପଡ଼ୋଶୀ ଗ୍ରାମବାସୀଙ୍କ ଗହଣରେ ମଧ୍ୟ ଆଲୋଚନାର ମୁଖ୍ୟ ବିଷୟ ସାଜିଲା । କିଏ ଏ କଥା ଶୁଣି ବିଶ୍ୱାସ କରିଗଲା ତ ଆଉ କିଏ ସହଜରେ ଗ୍ରହଣ କରିପାରିଲାନି । ହେଲେ ଯେଉଁଦିନ ପାଖ ଗାଆଁରେ କେତେଜଣ ଯୁବକ ଚଇତୁର ଦକ୍ଷତାକୁ ତୁଚ୍ଛା ଗୁଲିଗପ କହି ହସି ଉଡ଼େଇଦେଲେ, ସେଦିନ ଚେତ୍-ଲି ସମର୍ଥକ ଆଦୌ ସମ୍ଭାଳି ପାରିଲେନି । ବହୁତ ଯୁକ୍ତିତର୍କ ହେଲା । ଶେଷକୁ ନିଷ୍ପତ୍ତି ହେଲା ଯେ ତାଙ୍କ ଗାଆଁର ଭୀମା ପହିଲିମାନ୍ ଆଉ ଚଇତୁ ମଧ୍ୟରେ ଲଢ଼େଇହେବ । ସେଇଥିରୁ ପ୍ରମାଣିତ ହେବ କାହାର କେତେ ଦମ୍ !

କଥାଟା ଗାଆଁର କେତେ ଜଣ ବୟସ୍କ ଲୋକଙ୍କୁ ଭଲ ଲାଗିଲାନି ବୋଧହୁଏ । ସେଥିପାଇଁ ପିଲାଙ୍କୁ ଏ ପ୍ରତିଯୋଗିତାରୁ ନିବୃତ୍ତ ରହିବାକୁ ସେମାନେ ପରାମର୍ଶ ଦେଲେ । କିନ୍ତୁ ଏଥିରେ କେତେଜଣ ଚେତ୍-ଲି ପ୍ରଶଂସକ ବିରକ୍ତ ହୋଇ ମତଦେଲେ, "ତୁମେ ସବୁ ପୁରୁଣା କାଳର ଲୋକ । ଏ କୁଂଫୁ କଳାର ମହତ୍ତ୍ୱ କ'ଣ ଜାଣିଚ ଯେ ଆମକୁ ଉପଦେଶ ଶୁଣଉଚ ! ଜମା ଭଲି ଯିବୁନି ତୁମ କଥାରେ ।"

ଖୁବ୍ ଉତ୍ସାହ ଉଦ୍ଦୀପନାର ସହ ଲଢ଼େଇ ପାଇଁ ପ୍ରସ୍ତୁତି ଜାରି ରହିଲା । ନିର୍ଦ୍ଧାରିତ ଦିନ ଶହ ଶହ ଦର୍ଶକଙ୍କ ଉପସ୍ଥିତିରେ ଲଢ଼େଇ ଆରମ୍ଭ ହେଲା । ଉପରେ ଭୀମା ପହିଲିମାନ୍ ଏବଂ ଗାଁ ପଡ଼ିଆରେ ମାଷ୍ଟର ଚେତ୍-ଲି । ଭୀମା ହାତଗୋଡ଼ ହଲେଇବା ପୂର୍ବରୁ ଚଇତୁ ତା'ଚାରି ପାଖରେ ଦୁଇଘେରା ବୁଲି ଆସି

କୁଂଫୁର ଅସାଧାରଣ କଳା ପ୍ରଦର୍ଶନ ଆରମ୍ଭ କରିଦେଲା । ସମର୍ଥକମାନେ 'ଚେତ୍-ଲି', 'ଚେତ୍-ଲି' ବୋଲି ଉଚ୍ଚ କଣ୍ଠରେ ଚିତ୍କାର କରି ତାଙ୍କ ଖେଳାଳିଙ୍କୁ ଉତ୍ସାହିତ କରୁଥାଆନ୍ତି । ହଠାତ୍ ଚଇତୁର ପଛୁଆ ଲାତରେ ଭୀମା ହାମୁଡ଼େଇ ପଡ଼ିଗଲା । ଚେତ୍-ଲି ସମର୍ଥକଙ୍କ କୋଳାହଳ ବହୁଗୁଣ ହୋଇଗଲା ।

ମାତ୍ର କେତୋଟି ମୁହୂର୍ତ୍ତ ମଧ୍ୟରେ ବାଜି ଓଲଟିଗଲା । ଭୀମାର ଏକ ଶକ୍ତିଶାଳୀ ମୁଥ ଚଇତୁର ମୁହଁରେ ବାଜିବାରୁ ସେ ଭାରସାମ୍ୟ ରକ୍ଷା କରି ନ ପାରି ତଳେ ପଡ଼ିଗଲା । ଏଥର ଭୀମା ଏ ସୁଯୋଗକୁ ହାତ ଛଡ଼ା ନ କରି ତା'ର ସଦୁପଯୋଗ କଲା । ଦ୍ୱିଗୁଣ ଉତ୍ସାହରେ ସେ ଚେତ୍-ଲି ଉପରେ ଆକ୍ରମଣ ଜାରି ରଖିଲା । ଚେତ୍-ଲି ପ୍ରତି ଆକ୍ରମଣ କରିବ କ'ଣ, ଆତ୍ମରକ୍ଷା କରୁ କରୁ ତା' ସମୟ ଗଲା । ଶେଷରେ ଭୀମାକୁ ବିଜୟୀ ଘୋଷଣା କରାଗଲା । ଚଇତୁ ପ୍ରଶଂସକ ନିରାଶ ହୋଇ ଘରକୁ ଫେରିଲେ ।

ପରଦିନ ସକାଳେ କେତେଜଣ କୁଂଫୁ କ୍ରୀଡ଼ା-ପ୍ରେମୀ ଯାଇ ଚଇତୁ ରହୁଥିବା ଘରେ ପହଞ୍ଚିଲେ ପରାଜୟର କାରଣ ପଚାରି ବୁଝିବାକୁ; ହେଲେ ଚଇତୁର ଦେଖା ନ ଥିଲା । ସେମାନେ ଏଣିକିତେଣିକି ଚାହିଁ ଡାକ ପକାଇଲେ । ତଥାପି ଚଇତୁର କୌଣସି ଉତ୍ତର ମିଳିଲାନି । ସେପାଖରୁ ନିଧିଅଜା ବାହାରିଆସି ଜବାବ ଦେଲେ, "କିରେ, ଏଯାଏଁ କ'ଣ କୁଂଫୁ ଭୂତ ତୁମ ମୁଣ୍ଡରୁ ଓହ୍ଲେଇନି ! ମୁଁ ତୁମମାନଙ୍କୁ ମୂଳରୁ ପରା କହୁଛି, ଯିଏ ପାଠ ଛାଡ଼ି ଶାଠରେ ମାତିଲା, ଚଗଲାମି କରି ଶିକ୍ଷକଙ୍କ ବେତମାଡ଼କୁ ଡରି ଘର ଛାଡ଼ି ପଳେଇଲା, ସିଏ କି ପ୍ରକାର ଲଢ଼େଇ ଶିଖେଇବ ! ତୁମେ ସବୁ ଆମ ଉପଦେଶକୁ ତୁଚ୍ଛ କରି ତା' ବାହାପିଆ କଥାରେ ମାତିଲ, ତାକୁ ନେଇ ମୁଣ୍ଡରେ ଥୋଇଲ । ଏବେ ତ ସେ ତା'ର ଯୋଉ ପାରିବାପଣ ଦେଖାଇଲା, ସେଥିରେ ଅନ୍ୟକୁ ମୁହଁ ଦେଖାଇଥା'ନ୍ତା କେମିତି ? ତେଣୁ ରାତିଅଧିଆ ଲୁଚି ସହରକୁ ବାହୁଡ଼ିଗଲାଣି । ଏବେ ତୁମେ ସବୁ ତା'ର ଗୋଡ଼ାଣିଆ ଦଳ ନିଜ ମୁହଁ କେଉଁଠି ଲୁଚାଇବ ସେଇ ବ୍ୟବସ୍ଥା କର ।"

ଚଇତୁର ପ୍ରକୃତ ଦକ୍ଷତା କଳନା ନ କରି ତା' ବାହାପିଆ କଥାରେ ଭଳି ଯାଇଥିବାରୁ ପିଲାଏ ଲଜ୍ଜିତ ହେଲେ ।

*ମାମୁରିଆ, ଛେଣ୍ଡିପଦା, ଅନୁଗୋଳ- ୭୫୯୧୨୪*

---



ଜଗୁଆଳ କୁକୁରଗୁଡ଼ିଏ ବିକ୍ରୟ କରୁଥିବା ଲୋକଠାରୁ ଜଣେ ବାବୁ ଏକହଜାର ଟଙ୍କା ଦେଇ ଗୋଟିଏ ଜଗୁଆଳ କୁକୁର ନେଲେ । ଘରେ ତାକୁ ଅତି ଯତ୍ନରେ ପାଳିଲେ । ବାବୁ ଯେଉଁ ଘରେ ଶୁଅନ୍ତି, ସେହି ଘରେ କୁକୁରଟି ମଧ୍ୟ ଶୁଏ । ଦିନେ ସକାଳେ ବାବୁ ଦେଖିଲେ ଯେ ତାଙ୍କର ଘରର କବାଟ ତଡ଼ାଯାଇ ତିନିଶହ ଟଙ୍କା ଚୋରିଯାଇଛି । କୁକୁରଟି ସେହିପରି ଆଖି ବନ୍ଦ କରି ଶୋଇଛି ।

– ବାବୁ କୁକୁର ବିକୁଥିବା ଲୋକକୁ ସମସ୍ତ ଘଟଣା କହିଲେ– ଚୋରି ହେଲାବେଳେ କୁକୁର ଭୁକିଲା ନାହିଁ– ଏହା କି ଜଗୁଆଳ କୁକୁର !

– ରାତ୍ରରେ ମାତ୍ର ୩୦୦ ଟଙ୍କା ଚୋରି ପାଇଁ ଭୁକି ଆପଣଙ୍କର ଲକ୍ଷେଟଙ୍କା ମୂଲ୍ୟର ସୁନିଦ୍ରା ଭାଙ୍ଗିବାକୁ କୁକୁର ଚାହିଁଲା ନାହିଁ । ଅଧିକ ହୋଇଥିଲେ କୁକୁର ଭୁକିଥାଆନ୍ତା ।

– ଆଏଁ, ସତେ କି ?

**--ଡା. ଅଜିତାନନ୍ଦ ଗୋସ୍ୱାମୀ,** କଟକ-୧୨

# ଆସିଲା ବରଷା ରାଣୀ

ଶ୍ରୀ ସୁନୀଲ ପ୍ରଧାନ

ଆସିଲା ବରଷା ରାଣୀ
କେତେଦିନ ପରେ ଲୋକଙ୍କ ଦୁଃଖକୁ
ଏବେ ସେ ପାରିଲା ଜାଣି
ଗାଡ଼ିଆ ପୋଖରୀ ସବୁ ଗଲା ପୂରି
ଚାରିଆଡ଼େ ଖାଲି ପାଣି
ଆସିଲା ବରଷା ରାଣୀ ।

ଗଛର ଶୁଖିଲା ପତ୍ର
କିଏ ସେ କଲାଟି ମନ୍ତ୍ର
ସୁଲୁସୁଲୁ ବାଆ ବାଜିକି ଦେହରେ
କଅଁଳି ଉଠିଲା ପୁଣି
ସାଧବ ବୋହୂର ଥିରିଥିରି ଚାଲି
ଜନମନ ନିଏ କିଣି
ଆସିଲା ବରଷା ରାଣୀ ।



ଆକାଶର ଇନ୍ଦ୍ରଧନୁ ଭୁଲି ନ ହୁଅଇ ମନୁ
ନାନା ରଙ୍ଗେ ଶୋଭା ଦିଶେ
କୁନାର ତିଆରି କାଗଜ ଡଙ୍ଗାଟି
ଢଳ ଢଳ ହୋଇ ଭାସେ



ଚାଷୀଭାଇ ଆମ ନୂଆ ବିହନକୁ
ଜମିରେ ଦିଅଇ ବୁଣି
ଆସିଲା ବରଷା ରାଣୀ ।

*(୯ମ), ଯୁବଜ୍ୟୋତି ଉଚ୍ଚ ବିଦ୍ୟାଳୟ, କଳାବେଡ଼ା, ବାମୁର, କିଶୋରନଗର, ଅନୁଗୋଳ*

---




* ଭାରତରେ କତା ଶିଳ୍ପ (Coir Industry) ମୁଖ୍ୟତଃ କେରଳ ରାଜ୍ୟରେ ଅବସ୍ଥିତ ।
* ଚୀନ୍‌ରେ ବ୍ରହ୍ମପୁତ୍ର ନଦୀ, ୟାର୍‌ଲୁଙ୍ଗ ସାଙ୍ଗପୋ (Yarlung Tsangpo) ନାମରେ ପରିଚିତ ।
* ଅଠର ବର୍ଷ ବୟସରେ ଗାନ୍ଧିଜୀ ପ୍ରଥମେ ଇଂଲଣ୍ଡ ଯାତ୍ରା କରିଥିଲେ ।
* ପୁଲିତ୍‌ଜର୍ ପୁରସ୍କାର (Pulitzer Award) ପାଇଥିବା ପ୍ରଥମ ଭାରତୀୟ ହେଉଛନ୍ତି ଗୋବିନ୍ଦ ବିହାରୀ ଲାଲ୍ ।



* ବାବା ରାମଦେବଙ୍କର ମୂଳନାମଟି ରାମକୃଷ୍ଣ ଯାଦବ ।

# ଛୋଟ ପିଲାଙ୍କ ରକ୍ତଚାପ ବୃଦ୍ଧିର କାରଣ

ଡକ୍ଟର ମୁରାରି ମୋହନ ଦାଶ

ଉଚ୍ଚ ରକ୍ତଚାପ ସମସ୍ୟା କେବଳ ୩୦ ବର୍ଷରୁ ଉର୍ଦ୍ଧ୍ୱ ବୟସର ବ୍ୟକ୍ତିଙ୍କଠାରେ ଆଗରୁ ଦେଖାଯାଉ-ଥିଲା, ଏବେ କିନ୍ତୁ ଛୋଟ ଶିଶୁଠାରୁ ଆରମ୍ଭ କରି କିଶୋର କିଶୋରୀଙ୍କଠାରେ ତାହା ଦେଖିବାକୁ ମିଳୁଛି । ଚିକିତ୍ସକମାନେ ସତର୍କ କରାଇଲେଣି ଯେ ଶୈଶବରେ ଉଚ୍ଚ ରକ୍ତଚାପ ରହିଲେ ଯୌବନରେ ବା ବ୍ୟକ୍ତି ବୟସ୍କ ହେଲା ପରେ ତାହା ହୃଦ୍‌ବାହିନୀ ରୋଗ ସୃଷ୍ଟି କରିପାରେ । ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ ଉଚ୍ଚ ରକ୍ତଚାପକୁ ବିଶ୍ୱର ସାଧାରଣ ସ୍ୱାସ୍ଥ୍ୟ ସମସ୍ୟା ଭାବରେ ଘୋଷଣା କରିଛନ୍ତି । ପୃଥୁଳତା ଓ ଡାଇବେଟିସ୍‌କୁ 'ସ୍ୱାସ୍ଥ୍ୟ ବୋଝ' (Health Burden) ଭାବରେ ଗଣନା କରାଯାଏ । ପିଲାଙ୍କର ଉଚ୍ଚ ରକ୍ତଚାପ ଏକ ଛୋଟ ସମସ୍ୟା ଭାବି ଅଣଦେଖା କରିବା ଅନୁଚିତ ।

ଗବେଷଣାରୁ ଜଣାଯାଏ ଯେ ଭାରତରେ ୧୭ ପ୍ରତିଶତ କିଶୋର-କିଶୋରୀଙ୍କର ଉଚ୍ଚ ରକ୍ତଚାପ ରହିଛି । ଏହା ସ୍ଥିର ଜୀବନଶୈଳୀ ଓ ଅଜ୍ଞାନତା ପାଇଁ ହେଉଥିବାର ଜଣାଯାଏ । କୌଣସି କାରଣ ନ ଥାଇ ଉଚ୍ଚ ରକ୍ତଚାପ ରହିଲେ ତାକୁ ପ୍ରାଥମିକ ଉଚ୍ଚ ରକ୍ତଚାପ କୁହାଯାଏ । ଯେତେବେଳେ ଉଚ୍ଚ ରକ୍ତଚାପର କାରଣ ଜଣାଥାଏ, ତାକୁ ମାଧ୍ୟମିକ ଉଚ୍ଚ ରକ୍ତଚାପ କୁହାଯାଏ । ପିଲମାନଙ୍କ କ୍ଷେତ୍ରରେ ଉଚ୍ଚ ରକ୍ତଚାପ ସାଧାରଣତଃ ମଧ୍ୟମ ଶ୍ରେଣୀର । କାରଣ ଏହା ବୃକ୍କ, ହୃତପିଣ୍ଡ, ଅନ୍ତଃସ୍ରାବୀ ଗ୍ରନ୍ଥି, ରକ୍ତବାହୀ ନଳୀ ଆଦି ରୋଗ ଏବଂ ଔଷଧର ପାର୍ଶ୍ୱ ପ୍ରତିକ୍ରିୟା ପାଇଁ ହୋଇଥାଏ । ପ୍ରାଥମିକ ଉଚ୍ଚ ରକ୍ତଚାପର କୌଣସି ଲକ୍ଷଣ ପ୍ରକାଶ ପାଏନାହିଁ; କିନ୍ତୁ ଭିତରେ ଭିତରେ ବିଭିନ୍ନ ଅଙ୍ଗ ନଷ୍ଟ ହୋଇଯାଏ । ସାଧାରଣତଃ ଚିକିତ୍ସକମାନେ ପିଲାମାନଙ୍କର ରକ୍ତଚାପ ମାପି ନ ଥାନ୍ତି ।

୧୨ ବର୍ଷରୁ ଛୋଟ ପିଲାଙ୍କର ରକ୍ତଚାପ ବୃଦ୍ଧି ହୁଏନି ବୋଲି ସାଧାରଣରେ ଧାରଣା ରହିଛି । ୧୮/୧୯ ବର୍ଷ ପରେ ପିଲାମାନେ ଯୁବକଯୁବତୀ ହୋଇଯା'ନ୍ତି । ଶିଶୁରୋଗ ବିଶେଷଜ୍ଞମାନେ ୧୨ ବର୍ଷ ବୟସ ପର୍ଯ୍ୟନ୍ତ ପିଲାଙ୍କର ଚିକିତ୍ସା କରନ୍ତି । ୧୨ରୁ ୧୯ ବର୍ଷ ବୟସ ମଧ୍ୟରେ ଯେଉଁ ପିଲାମାନେ ରହିଲେ, ସେମାନଙ୍କ କଥା କ'ଣ ହେବ ? ତାଙ୍କ କଥା ବୁଝିବ କିଏ ? ପ୍ରକୃତରେ ପିଲାଙ୍କୁ ତିନବର୍ଷ ହେଲା ପରେ ସେମାନଙ୍କ ରକ୍ତଚାପ ମାପିବା କଥା । ସ୍କୁଲରେ ନାମ ଲେଖାଇବାବେଳେ ରକ୍ତଚାପ ମାପିବା ବାଧ୍ୟତାମୂଳକ ହେବା ଜରୁରୀ । ଉଚ୍ଚ ରକ୍ତଚାପର ସଫଳ ଚିକିତ୍ସା କରା ନ ଗଲେ ପିଲାଙ୍କ ଶରୀରର ବିଭିନ୍ନ ଅଙ୍ଗର କ୍ଷତି ହୋଇଥାଏ । ଶିଶୁରୋଗ ଚିକିତ୍ସକମାନେ ୧୮ ବର୍ଷ ପୂରିବା ପର୍ଯ୍ୟନ୍ତ ପିଲାଙ୍କ ଚିକିତ୍ସା ଦାୟିତ୍ୱ ନେବା ଉଚିତ । ଖୁବ୍ କମ୍ ଶକ୍ତିର ଔଷଧ ପିଲାଙ୍କୁ ଦେବା ବିଧେୟ । ବିଭିନ୍ନ ଔଷଧର ମିଶ୍ରଣ (Multiple Drugs) ପିଲାଙ୍କୁ ନ ଦେବା ଆବଶ୍ୟକ ।

ପୃଥୁଳ ପିଲାମାନଙ୍କର ଓଜନ କମାଇବାକୁ ଉପଦେଶ ଦେବା ଉଚିତ । ସେମାନଙ୍କୁ ସୁଷମଖାଦ୍ୟ ଖାଇବାକୁ ଦେଇ ବ୍ୟାୟାମ କରିବାକୁ କହିବା ଉଚିତ । ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନର ସୁପାରିଶ ଅନୁସାରେ ପିଲାଙ୍କୁ ପଟାସିୟମ୍‌ଯୁକ୍ତ ଆହାର ଦେବା କଥା । ପିଲାମାନେ ଲୁଣି ଖାଦ୍ୟ ଖାଇଲେ ଉଚ୍ଚ ରକ୍ତଚାପ ବୃଦ୍ଧିର ସମ୍ଭାବନା ଥାଏ ।



ତେଣୁ ଚାଟ୍, ଗୁପ୍‌ଚୁପ୍ ଆଦି ଚଟ୍‌ପଟା ସେମାନଙ୍କୁ ନ ଦେଲେ ଭଲ ।

ଆଜିକାଲି ଘର ଦୁଆର ମୁହଁରେ ସ୍କୁଲ୍, ତେଣୁ ସ୍କୁଲ ଯିବାକୁ ପିଲାଙ୍କୁ ଚାଲିବାକୁ ପଡୁନାହିଁ । ସହରରେ ପିଲାଙ୍କ ପାଇଁ ଖେଳପଡ଼ିଆର ଅଭାବ । ଦୂର ସ୍ଥାନକୁ ଖେଳିବାକୁ ଯିବା ପାଇଁ ଅଭିଭାବକମାନେ ମନାକରନ୍ତି । କାରଣ ସହରରେ ସେମାନଙ୍କୁ ବାହାରକୁ ଛାଡ଼ିବା ବିପଦ । ପିଲାମାନେ ଘର ତିଆରି ଖାଦ୍ୟ ଖାଇବାକୁ ପସନ୍ଦ କରୁନାହାନ୍ତି । ଫାଷ୍ଟ୍‌ଫୁଡ୍ ପରି ସେଗୁଡ଼ିକ ସ୍ୱାଦିଷ୍ଟ ନୁହେଁ । ଛୋଟପିଲାଙ୍କ ଉପରେ ଅଭିଭାବକମାନଙ୍କ ତରଫରୁ ପାଠପଢ଼ାରେ ଚାପ ପ୍ରୟୋଗ କରାଯାଏ । ବାପା/ମା' ସବୁବେଳେ ଅନ୍ୟପିଲାମାନଙ୍କ ସହିତ ନିଜ ପିଲାଙ୍କୁ ତୁଳନା କରନ୍ତି, ଯାହା ନ କରିବା କଥା । ପ୍ରତ୍ୟେକ ପିଲା ସ୍ୱତନ୍ତ୍ର ଗୁଣ ନେଇ ଜନ୍ମ ହୋଇଥାନ୍ତି । ସବୁ ପିଲା ୯୦ ପ୍ରତିଶତ ନମ୍ବର ରଖିପାରିବେ ନାହିଁ । ଏ କଥା ଶିକ୍ଷକ ଅଭିଭାବକମାନେ ବୁଝି ମଧ୍ୟ ଅବୁଝା ହୋଇଥା'ନ୍ତି ।

ପିଲାମାନଙ୍କୁ ଲୁଣି, ଅତିରିକ୍ତ ତେଲ / ଘିଅଯୁକ୍ତ ଖାଦ୍ୟ ନ ଦେବା ଉଚିତ । ସେମାନଙ୍କୁ ଫଳ ଓ ପନିପରିବା ଖାଇବାକୁ ଉତ୍ସାହିତ କରିବା କଥା । ଶାରୀରିକ ସ୍ତରରେ ସେମାନଙ୍କୁ କ୍ରିୟାଶୀଳ ରଖିବାକୁ ଓ ଖେଳିବାକୁ ସୁଯୋଗ ଦେବା ବିଧେୟ । ସେମାନଙ୍କୁ ମାନସିକ ଚାପମୁକ୍ତ ରଖି ସ୍ୱାଧୀନ ଚିନ୍ତା କରିବାକୁ ସୁଯୋଗ ଦେଲେ, ବଡ଼ ହେଲେ ସେମାନେ ବୃତ୍ତିଗତ ସଫଳତା ପାଇପାରିବେ ।

ଯଦି ଆପଣଙ୍କର ପିଲାର ମୁଣ୍ଡବ୍ୟଥା ହେଉଛି, ଶୀଘ୍ର ଶୀଘ୍ର ନିଃଶ୍ୱାସପ୍ରଶ୍ୱାସ ଆସିବାଯିବା କରୁଛି, ଛାତିରେ ଯନ୍ତ୍ରଣା ହେଉଛି ଓ ମୁଣ୍ଡ ବୁଲାଉଛି, ତେବେ କାଳବିଳମ୍ବ ନ କରି ଡାକ୍ତରଙ୍କ ପାଖରେ ରକ୍ତଚାପ ମାପିନିଅନ୍ତୁ ଓ ସୁପାରିଶ ଅନୁସାରେ ତାକୁ ଔଷଧ ସେବନ କରିବାକୁ ଦିଅନ୍ତୁ ।

*ଜି/ଏଲ୍-୧, ଭି.ଏସ୍.ଏସ୍ ନଗର, ଭୁବନେଶ୍ୱର- ୭୫୧୦୦୭*

---



ପାର୍ଶ୍ୱସ୍ଥ ଚିତ୍ରରେ ଥିବା ତ୍ରିଭୁଜ ଭିତରେ କେତୋଟି ତ୍ରିଭୁଜ ଲୁଚି ରହିଛି, ତାହା ବାହାର କରନ୍ତୁ । ନିମ୍ନରେ ଥିବା ସଂଖ୍ୟାଗୁଡ଼ିକ ମଧ୍ୟରୁ କେଉଁଟି ଠିକ୍ ଉତ୍ତର ?

କ) ୧୦ ଖ) ୧୨

ଗ) ୧୪ ଘ) ୧୬

*(ଉତ୍ତର ୧୮ ପୃଷ୍ଠାରେ)*



# ମାର୍‌ଗେ....ଅନ୍ଧବିଶ୍ୱାସ... ସତ୍ୟ

## ଡ. ଶୁଭେଂଦ୍ରମୋହନ ଶ୍ରୀଚଂଦନ ସିଂହ

ମେକ୍‌ସିକୋ, ମଧ୍ୟ ଓ ଦକ୍ଷିଣ ଆମେରିକା ଜଙ୍ଗଲରେ ମାର୍‌ଗେ ରହେ । ବିଲେଇ ଜାତିର, ଚିତାବାଘ ପରି । ବିଚିତ୍ର ପ୍ରାଣୀ ଯେ । ଛୋଟ ମାଙ୍କଡ଼ଛୁଆ ବିକଳରେ ଯେମିତି ଡାକେ, ସେଭଳି ଶବ୍ଦ କରେ ମାର୍‌ଗେ । ସେ ଶବ୍ଦ ଶୁଣି ବଡ଼ ମାଙ୍କଡ଼-ମାଙ୍କଡ଼ୀ ଧାଇଁ ଆସନ୍ତି । ଗଛ ଡାଳରେ ବା ବୁଦା ଉହାଡ଼ରେ ଲୁଚିଥାଏ ମାର୍‌ଗେ । ମାରେ କୁଦା ଶିକାର ଉପରକୁ, ବଢ଼ିଆ ଭୋଜନ ହୁଏ ତା'ର ।

ପ୍ରାଚୀନ ରୋମୀୟମାନେ ବିଶ୍ୱାସ କରୁଥିଲେ ଯେ କ୍ରୋକୋଟା ବୋଲି ଗୋଟେ ରାକ୍ଷସ ଅଛି । ଗଧିଆ ପରି ତା' ରୂପ । ସେ କାଳେ ଲୁଚିଛପି ରହିଥାଏ ମଣିଷ ବସ୍ତିର ପାଖରେ । ଶୁଣେ ଲୋକମାନଙ୍କ କଥାଭାଷା । ସଂଜ ପରେ ସେଇ ସେଇ ଲୋକମାନଙ୍କ କଥା ଅନୁକରଣ କରେ । ନାଁ ଧରି ଡାକେ । ସେ ଡାକରେ ଭଳିଯାଇ ଯିଏ ବାହାରି ଆସେ, ତାକୁ ମାରି ଖାଏ । ରୋମୀୟମାନେ ଭାବୁଥିଲେ ଭାରତ କି ଇଥିଓପିଆରେ ସେ କ୍ରୋକୋଟା ରହେ ।



ଆମ ଭାରତରେ ବି ସେମିତି ଅଂଧବିଶ୍ୱାସଟେ ଅଛି । ଲୋକେ ଭାବନ୍ତି ଭୂତ କି ଦେବତା ରାତିରେ ଆସି ଡାକେ । ଯିଏ ସେ ଡାକ ଶୁଣି ବାହାରକୁ ଯାଏ, ସିଏ ମରେ ।

ଏ ଉଭୟ କଥା ପୂରାପୂରି ମିଛ । ତେବେ ହାଏନା ବୋଲି ଯୋଉ ପ୍ରାଣୀଟେ ଅଛି, ସେ ମଣିଷ କଥା କହିବା ପରି ଶବ୍ଦ କରିପାରେ; କିନ୍ତୁ କଥା କହିପାରେନି । ଏ ପ୍ରକାର ହେଏନା ଦିହରେ ଛଉଛଉକା ଚିହ୍ନ ଥାଏ । ବୈଜ୍ଞାନିକମାନେ ତେଣୁ କ୍ରୋକୁଟା କ୍ରୋକୁଟା (Crocuta Crocuta) ଭାବରେ ଚିହ୍ନିତ କରନ୍ତି ।

ହେଲେ, ଯେ ମାର୍‌ଗେକୁ ବୈଜ୍ଞାନିକମାନେ ପ୍ରଥମେ ବ୍ରାଜିଲ ଜଙ୍ଗଲରେ ପାଇଲେ ଆଉ ତା'ର ଡାକ ଶୁଣି ବିସ୍ମିତ ହୋଇଗଲେ । ସେଠା ଆଦିବାସୀଏ କହନ୍ତି ଯେ ମାର୍‌ଗେ ଅନ୍ୟ କେତେକ ଜୀବ ପରି ବି ଶବ୍ଦ କରିପାରେ ।

ଭାରତ ଓ ସାଇବେରିଆର କେତେକ ଶିକାରୀ କହନ୍ତି ଯେ ବାଘମାନେ କୁଆଡ଼େ ହରିଣ ଡାକ ଭଳି ଶବ୍ଦ କରନ୍ତି । ଫଳରେ ସାଥୀ ହରିଣ ଭାବି ହରିଣ ଆସେ ଓ ବାଘର ଶିକାର ହୁଏ ।

ପଶୁପକ୍ଷୀମାନେ ଏମିତି କଥା କହିପାରୁଥିବା ସଂପର୍କରେ ନାନା ଉପାଖ୍ୟାନ ବି ଅଛି । ବୈଜ୍ଞାନିକମାନେ ଏବେ କହୁଛନ୍ତି, ବିଲେଇ ଜାତିର ଜୀବମାନେ ଖୁବ୍ ଚଂଚଳ ।

*ଯଦୁମଣିପାଟଣା, ରେଢ଼ାଖୋଲ, ସମ୍ବଲପୁର-୭୬୮୧୦୬*

ଉତ୍ତର : ୧୬




ତଳେ କେତେକ ପ୍ରଶ୍ନ ଓ ଶେଷରେ ତାର ଉତ୍ତର ଦିଆଯାଇଛି । ପାଠକମାନଙ୍କୁ ଅନୁରୋଧ, ସେମାନେ ଉତ୍ତର ନଦେଖି ପ୍ରଥମେ ନିଜେ ନିଜେ ପ୍ରଶ୍ନଗୁଡ଼ିକର ସମାଧାନ କରିବାକୁ ଚେଷ୍ଟା କରିବେ ଏବଂ ପରେ ପ୍ରଦତ୍ତ ଉତ୍ତର ସଙ୍ଗେ ମିଳାଇନେବେ ।

## ପ୍ରଶ୍ନ

୩ । ଧନୀ– ଦରିଦ୍ର ବିପରୀତାର୍ଥବୋଧକ ଏବଂ ରାଜା– ପ୍ରଜା ଆପେକ୍ଷିକ ଶବ୍ଦ । ଏହିପରି କେତେ ଯୋଡ଼ା ଶବ୍ଦର ଅକ୍ଷରକୁ ଓଲଟପାଲଟ କରି ଦୁଇଟି ସ୍ତମ୍ଭରେ ପାଖକୁ ପାଖ ଦିଆଯାଇଛି । ସେଗୁଡ଼ିକର ମୂଳରୂପ ବାହାର କର ।

ଅଆରୁ – ଷୁନାଉ
ଠିନକ – କୋଳମ
ଚେଡ଼ାମ – ସକାମ
ଆଣିଲୁ – ଅଣାଲ
ରିଶାକରୀ – ସିନକମା

୪ । ତିନୋଟି ଅକ୍ଷରକୁ ଓଲଟପାଲଟ କରି ଲେଖିଲେ ତିନୋଟି ଭିନ୍ନ ଭିନ୍ନ ଶବ୍ଦ ହୁଏ । ନିମ୍ନଲିଖିତ ସୂଚନା ଦେଖି ଶବ୍ଦ ତିନୋଟି ବାହାର କର । ପ୍ରତି ଶବ୍ଦରେ ସେହି ତିନୋଟି ଅକ୍ଷର ଅଛି ।

ସୂଚନା.....

୧ । କାଠ କାଟିବାର ଯନ୍ତ୍ର
୨ । ପ୍ରାଣୀ ଦେହର ଏକ ପଦାର୍ଥ
୩ । ଯୁକ୍ତିର ଅନ୍ୟନାମ

୫ । ବନ୍ଧନୀ ଭିତରେ ଏପରି ଗୋଟିଏ ଗୋଟିଏ ଶବ୍ଦ ବସାଅ, ଯାହା ପ୍ରଥମ ଶବ୍ଦର ଶେଷ ଅଂଶ ଏବଂ ଦ୍ୱିତୀୟ ଶବ୍ଦର ମୂଳ ଅଂଶ ହେବ ।

କ) ହରି (.........) ତାଳ
ଖ) ନର (.........) ଦ୍ୱାର
ଗ) ଅଭି (.........) ଗ୍ରହ
ଘ) ସମ (.........) କୋଳି
ଙ) ପରି (.........) ବୁଲା

୬ । ବନ୍ଧନୀ ଭିତରେ ଏପରି ଶବ୍ଦ ବସାଅ, ଯାହା ଦୁଇପାଖରେ ଥିବା ଅର୍ଥକୁ ବୁଝାଇବ ।

ପନ୍ତ (...............) ସମୂହ
ଅକ୍ଷର (............) ରଙ୍ଗ
ଶବବାହକ (.........) ପହିଲିମାନ

୭ । କେଉଁଠି ଏ ଧାଡ଼ିଟି ଅଛି ? – 'ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।'

୮ । ଘରି ଘିରି ଚାଲେ ଉପର ପାଟି
ତଳ ପାଟି ଥାଏ କାମୁଡ଼ି ମାଟି ।

୯ । ଅଧାଖିଆ ବେଳେ ଦିଶଇ କଳା
ପୂରା ଖାଇଦେଲେ ଦିଶଇ ଧଳା ।

*(ଉତ୍ତର ୨୪ ପୃଷ୍ଠାରେ)*

# ଧନ୍ୟ ସେ ଜନନୀ !

ଶ୍ରୀମତୀ ପ୍ରଭାତୀ ମିଶ୍ର

ମିତାଲି ତା' ମାଆ କଥା ସବୁବେଳେ ମନେ-ପକାଏ । ବଗିଚା କାମରେ ତାଙ୍କର ବହୁତ ସରାଗ ଥିଲା । ତାଙ୍କ ଛାତରେ ଲଗାଯାଇଥିବା ଗୋଲାପ ଗଛଟିର ସେ ସବୁବେଳେ ଯତ୍ନ ନେଉଥାଏ । ନାଲିଆ ଗୋଲାପଟି ଫୁଟିଲେ ତାକୁ ଲାଗେ ଯେପରି ତା' ମାଆ ତା' କଥା ପଚାରୁଛନ୍ତି । ମାଆଙ୍କ ପିନ୍ଧା ଲୁଗାପଟା ସବୁ ସେ ଯତ୍ନରେ ରଖିଥାଏ । କାରଣ ସେଇଥିରୁ ସେ ମାଆଙ୍କର ସ୍ପର୍ଶର ଆନନ୍ଦ ପାଏ ।

ମିତାଲି ସ୍କୁଲରେ ପାଠ ପଢୁଥିଲାବେଳେ ତା'ମାଆ ସବୁବେଳେ ତା'ର ଉଚ୍ଚ ଶିକ୍ଷା କଥା ଚିନ୍ତା କରୁଥାଆନ୍ତି । ତେଣୁ ମ୍ୟାଟ୍ରିକ୍ ପରୀକ୍ଷା ଦେବା ଆଗରୁ ତା'ର କଲେଜ ପାଠ ବିଷୟରେ ସମ୍ୟକ ଧାରଣା ହୋଇଯାଇଥିଲା । ମିତାଲିର ଅଜା ତାଙ୍କ ଝିଅ ପାଠପଢ଼ାରେ ଏତେ ଧ୍ୟାନ ଦେଇଥିଲେ ଯେ ସେ ପର ନିର୍ଭରଶୀଳ ହୋଇଯାଇ ପାଠରୁ ବୀତସ୍ପୃହ ହୋଇଗଲେ । ସ୍ନାତକ ଡିଗ୍ରୀ ପାଇବା ତାଙ୍କ ଭାଗ୍ୟରେ ନ ଥିଲା । ତେଣୁ ତାଙ୍କର ଏକାଉଣ୍ଟାଣ୍ଟ୍ ହେବାର ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା । ମିତାଲିର ମାଆ ଚାହିଁଲେ ତାଙ୍କ ଝିଅ ଯେପରି ତାଙ୍କ ପରି ଜୀବନରେ ଅସଫଳ ନ ହେଉ । ଝିଅର ଶିକ୍ଷା, ଖାଦ୍ୟପେୟ ଓ ସ୍ୱାସ୍ଥ୍ୟ କେଉଁଥିରେ ସେ ଅବହେଳା କରିନାହାନ୍ତି ।

ମିତାଲିର ମନେପଡ଼େ— ସେ କିପରି ତା' ମାଆଙ୍କ ସଙ୍ଗେ ବ୍ୟାଡ଼ମିଣ୍ଟନ୍ ଖେଳେ ଓ ନଖ ରଙ୍ଗଠାରୁ ଆରମ୍ଭ କରି ରାଜନେତାଙ୍କ ପର୍ଯ୍ୟନ୍ତ ସମସ୍ତ ବିଷୟରେ ସେ ମାଆଙ୍କ ସଙ୍ଗେ ଆଲୋଚନା କରେ । ତା' ନିଜ ପୋଷାକ ରଙ୍ଗ ବାଛିବା ବେଳେ ତା'ମତ ମାଆଙ୍କ ମତଠାରୁ ସର୍ବଦା ଭିନ୍ନ ଥାଏ । ଥରେ ଏକ ପୂଜା ବେଳେ ତା'ର ଏପରି ମାଆଙ୍କ ସହିତ ମତଭେଦ ହୋଇ ସେ କୌଣସି ସୌଖୀନ୍ ପୋଷାକ ପିନ୍ଧିପାରିଲା ନାହିଁ ।

ସେ ବର୍ଷ ଦଶହରା ଛୁଟି ହୋଇଥାଏ । ସେ ମାଆଙ୍କ ସହିତ ଆଲୋଚନା କରୁଥାଏ— ବି.ଏସ୍‌ସି. ପାଠ ପରେ ସେ କେଉଁଠି ତା'ର ସ୍ନାତକୋତ୍ତର ପାଠ ପଢ଼ିବ । ତା' ବାପା କାମରେ ବ୍ୟସ୍ତ ଥାଇ ତା' ସଙ୍ଗେ ରହିବାକୁ ସମୟ ଦେଇପାରନ୍ତି ନାହିଁ । ତା' ମାଆ ତା'ର ଆବଶ୍ୟକ ଜିନିଷ ସବୁ ତା ପାଇଁ ଦୋକାନରୁ ଆଣିଥାଆନ୍ତି । ସ୍କୁଲରେ ପଢ଼ିବା ବେଳେ ଚିତ୍ରାଙ୍କନରେ ତାକୁ ସାହାଯ୍ୟ କରନ୍ତି । ତା'ର ଲୁଗାପଟା ସଫା କରିବା, ମନ ଜାଣି ଖାଇବାକୁ ଦେବା, ସ୍କୁଲ ବସ୍‌ରେ ଛାଡ଼ିବା ଓ ସ୍କୁଲରେ ଶିକ୍ଷକଙ୍କ ସହିତ ତା' ପାଠ ବିଷୟରେ ଆଲୋଚନା କରିବା ଏବଂ ଦେହ ଖରାପ ହେଲେ ଡାକ୍ତରଙ୍କ ସହ ପରାମର୍ଶ କରିବା ଆଦି ସମସ୍ତ ବିଷୟରେ ତା' ମାଆ ତା' ପାଖେ ପାଖେ ଥାଆନ୍ତି; କିନ୍ତୁ ଏ ବର୍ଷ ତା ମାଆଙ୍କ ଦେହ ଖରାପ ଲାଗିବାରୁ ସେ ଡାକ୍ତରଖାନା ଗଲେ ।

ଦୁର୍ଭାଗ୍ୟବଶତଃ ଡାକ୍ତରୀ ପରୀକ୍ଷାରୁ ଜଣାଗଲା ଯେ ତାଙ୍କ ପେଟରେ କ୍ୟାନ୍‌ସର୍ ହୋଇଛି । ସମସ୍ତ ପ୍ରକାର ଚିକିତ୍ସା ସତ୍ତ୍ୱେ ବାପାଙ୍କର ଯଥାସାଧ୍ୟ ଅର୍ଥ ଖର୍ଚ୍ଚ ହୋଇ ମଧ୍ୟ ଏକବର୍ଷ ମଧ୍ୟରେ ତାଙ୍କର ଦେହାନ୍ତ ହୋଇଗଲା । କ୍ୟାନ୍‌ସର୍ ରୋଗରେ ଏତେ ଶୀଘ୍ର ଜୀବନ ଚାଲିଯାଏ, ମିତାଲି କଳ୍ପନା କରି ନ ଥିଲା । ମାଆଙ୍କ ବିନା କିପରି ବଞ୍ଚିବ, ସେ ଭାବି ପାରୁ ନ ଥିଲା । ସେ କାହା ସଙ୍ଗେ କଥା ହେବ ? କଲେଜରୁ ଫେରିଲେ ତାକୁ କିଏ ସ୍ନେହ ଆଦରରେ ଖାଇବାକୁ ଦେବ ? ପୂଜା-ପର୍ବରେ କିଏ ତାକୁ



ପୋଷାକ କିଣିଦେବ ? ତା' ଜୀବନ ଖାଲି ଖାଲି ଲାଗିଲା । ମାଆଙ୍କ ବିନା ଘରଟା ଶୂନ୍ୟ ଶୂନ୍ୟ ଲାଗିଲା ।

ମାଆଙ୍କ ମୃତ୍ୟୁଶଯ୍ୟା ପାଖରେ ଥାଇ ମିତାଲି ସେଦିନ ତାଙ୍କ ଆଗରେ ସିଦ୍ଧାନ୍ତ ନେଲା ଯେ ସେ ନିଶ୍ଚିତ ଭାବେ ଜଣେ ଡାକ୍ତର ହେବ ଏବଂ ତା' ପରି କେତେ ପିଲାଙ୍କୁ ମାତୃହରା ହେବା ଦୁର୍ଭାଗ୍ୟରୁ ରକ୍ଷା କରିବ । ସେ ମନଦେଇ ପାଠ ପଢ଼ିଲା । ଡାକ୍ତରୀ ବିଦ୍ୟାରେ ପାଠ ଶେଷ କଲା ଓ ଲଣ୍ଡନ୍ ଯାଇ କର୍କଟ ରୋଗର ନିରାକରଣ ଉପରେ ବିଶେଷ ଶିକ୍ଷା ଲାଭ କଲା ।

ଏବେ ମିତାଲି ତା' ମାଆଙ୍କ ନାମରେ ନାମିତ କରି ଏକ କର୍କଟ ରୋଗ ନିରୂପଣ ଓ ଚିକିତ୍ସାକେନ୍ଦ୍ର ପ୍ରତିଷ୍ଠା କରିଛି । ଦେଶବିଦେଶରୁ ବିଶେଷ ଜ୍ଞାନ ଥିବା ଡାକ୍ତରଙ୍କୁ ଆଣି ଗାଁ ଓ ସହରର ସ୍ତ୍ରୀଲୋକଙ୍କୁ ଦେଖାଇ ସ୍ୱଳ୍ପ ଖର୍ଚ୍ଚରେ ଚିକିତ୍ସା ବ୍ୟବସ୍ଥା କରିଛି । ଅସହାୟ ସ୍ତ୍ରୀଲୋକଙ୍କ ଭିତରେ ସେ ନିଜର ମାଆଙ୍କୁ ଫେରିପାଇଛି । ସେ ଆତ୍ମସନ୍ତୋଷ ଲାଭ କରିଛି ଯେ ତା' ମାଆ ଆଉ ତା'ଠାରୁ ଦୂରରେ ନାହାନ୍ତି । ସେ ତାକୁ ଆଶୀର୍ବାଦ ଦେଉଛନ୍ତି ଓ ଜନସେବାରେ ଅଗ୍ରସର ହେବା ପାଇଁ ତାକୁ ଦିଗ୍‌ଦର୍ଶନ ଦେଉଛନ୍ତି, ଯେପରି ତା ପାଖରେ ଥିବାବେଳେ ସେ ସବୁବେଳେ ଉଚିତ ମାର୍ଗରେ ଯିବା ପାଇଁ ତାକୁ ଉତ୍ସାହ ଦେଇଥିଲେ ।

ଆଜି ମିତାଲି ଏକ ସଫଳ ଡାକ୍ତର ହୋଇପାରିଛି ନିଜ ଗୋଡ଼ରେ ନିଜେ ଠିଆ ହୋଇପାରିଛି କେବଳ ତାର ଆଦର୍ଶ ମାଆ ପାଇଁ ।

ଧନ୍ୟ ମିତାଲି, ଧନ୍ୟ ତା ଜନନୀ !

*'ପ୍ରଣବାଳୟ', ୬୪୯, ମହାନଦୀ ବିହାର, କଟକ- ୭୫୩୦୦୪*

## 'ଯେ କୌଣସି ନ'ଟି ଉତ୍ତର ଦେଖନ୍ତୁ'

ପିଲାମାନେ, ତୁମେମାନେ ପରୀକ୍ଷା ଦେଲାବେଳେ ଦେଖିଥିବ– ପ୍ରଶ୍ନପତ୍ରରେ ଲେଖାଥାଏ- ଯେ' କୌଣସି ପାଞ୍ଚୋଟି ପ୍ରଶ୍ନର ଉତ୍ତର ଦିଅ, ପ୍ରତ୍ୟେକର ମୂଲ୍ୟ ସମାନ ।

ତୁମରି ଭଳି ଜଣେ ସ୍ୱାମୀ ତୀର୍ଥରାମ ଗଣିତରେ ଏମ୍.ଏ ପରୀକ୍ଷା ଦେବାକୁ ବାହାରିଲେ । ପ୍ରଶ୍ନ ପତ୍ରରେ ମୋଟ୍ ତେରଟି ପ୍ରଶ୍ନରୁ ଯେ' କୌଣସି ନ'ଟି ପ୍ରଶ୍ନର ଉତ୍ତର ଦେବାକୁ ନିର୍ଦ୍ଦେଶ ଥିଲା । ମାତ୍ର ତୀର୍ଥରାମ ଦେଖିଲେ– ସେ ସବୁ ପ୍ରଶ୍ନର ଠିକ୍ ଉତ୍ତର ଦେଇପାରିବେ । ଛାଡ଼ିବେ କିଆଁ ? ଏକ ଠାରୁ ତେର ଯାଏ ସବୁ ପ୍ରଶ୍ନର ଠିକ୍ ଉତ୍ତର ସେ ଲେଖିଦେଲେ । ଲେଖିସାରି ବିଶେଷ ଦ୍ରଷ୍ଟବ୍ୟରେ ଲେଖିଦେଲେ– "ଯେ କୌଣସି ୯ଟି ପ୍ରଶ୍ନର ଉତ୍ତର ଦେଖନ୍ତୁ ।"

ପରୀକ୍ଷାଫଳ ପ୍ରକାଶ ପାଇଲା । ଦେଖାଗଲା, ସେ ଶହେରୁ ଶହେ ରଖି ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାସ୍ କରିଛନ୍ତି । ଏମିତି ଛାତ୍ରକୁ ସିନା ମେଧାବୀ ଛାତ୍ର କହିବା !

**



## ⁂⁂ ମୁଁ ତାଙ୍କୁ ଜାଣେନାହିଁ

ଦିନେ ଜାପାନର ପ୍ରସିଦ୍ଧ ସନ୍ଥ ତଥା ଧର୍ମଗୁରୁ 'କେଇଚି ମେଇଜି' ଶିଷ୍ୟମାନଙ୍କ ସହିତ ଧର୍ମଚର୍ଚ୍ଚାରେ ବ୍ୟସ୍ତ ଥାଆନ୍ତି । ଏ ସମୟରେ ତାଙ୍କର ଜଣେ ଶିଷ୍ୟ ଆସି ତାଙ୍କ ହାତକୁ ପରିଚୟପତ୍ର ଖଣ୍ଡେ ବଢ଼େଇଦେଲା । ପରିଚୟ ପତ୍ରରେ ଲେଖାଥାଏ 'ଶ୍ରୀଯୁକ୍ତ କୀଟାଗାକୀ, ମହାମହିମ ରାଜ୍ୟପାଳ, କ୍ୟୋଟା ରାଜ୍ୟ ।'

ପରିଚୟ ପତ୍ର ଉପରେ ଆଖି ବୁଲେଇ ତାହା ଫେରେଇଦେଇ ମେଇଜି କହିଲେ– ଯାହା ଜଣାପଡୁଛି । ଇଏ ଜଣେ ବହୁତ ବଡ଼ ବ୍ୟକ୍ତି; କିନ୍ତୁ ମୁଁ ତାଙ୍କୁ ଜାଣେ ନାହିଁ । ତୁମେ ତାଙ୍କୁ ବିନମ୍ରତାର ସହିତ ଫେରେଇଦିଅ । ତାଙ୍କ ସହିତ ସାକ୍ଷାତ କରିବାକୁ ମୁଁ ଅକ୍ଷମ ।

ଶିଷ୍ୟ ରାଜ୍ୟପାଳଙ୍କ ପାଖକୁ ଯାଇ ମେଇଜି କହିଥିବା କଥା କହିଲେ । ତାଙ୍କ ମନରେ ପ୍ରଥମେ କ୍ରୋଧ ଜାତ ହେଲା; କିନ୍ତୁ ପରକ୍ଷଣରେ ଭାବିଲେ, ତାଙ୍କ କହିବାରେ ନିଶ୍ଚୟ କିଛି ଉଦ୍ଦେଶ୍ୟ ଅଛି । ସେଥିପାଇଁ ମନରେ କିଛି ସ୍ଥିର କରି ଆଉ ଏକ କାଗଜରେ କେବଳ ଗୋଟିଏ ଶବ୍ଦ 'କୀଟାଗାକୀ' ଲେଖି ଶିଷ୍ୟ ହାତରେ ପଠେଇଦେଲେ ।

ଦ୍ୱିତୀୟ ଥର ପରିଚୟ ପତ୍ରଟି ଦେଖିବାକ୍ଷଣି ମେଇଜି ଆନନ୍ଦରେ କହିଲେ– ଆରେ କିଟାଗାକୀ ଆସିଛି ! ତାକୁ ଶୀଘ୍ର ମୋ ପାଖକୁ ନେଇଆସ । ତା' ସହିତ ସାକ୍ଷାତ କରିବାକୁ ମୋର ଅନେକ ଦିନରୁ ଇଚ୍ଛା ଥିଲା ।

ଭିତରକୁ ଯାଇ ରାଜ୍ୟପାଳ ଅନେକ ସମୟ ଧରି ବିଭିନ୍ନ ଲୋକହିତକର କାର୍ଯ୍ୟ ସଂପର୍କରେ ସନ୍ଥଙ୍କ ସହିତ ଆଲୋଚନା କଲେ । ଫେରିବାବେଳକୁ ତାଙ୍କ ହୃଦୟ ଅପାର ଆନନ୍ଦରେ ପରିପୂର୍ଣ୍ଣ ହୋଇ ଉଠିଥିଲା ।

**--ଶ୍ରୀ ସୁରେଶ କୁମାର ପଣ୍ଡା,** *ଗୁମୁଡ଼ା, ଭୈରବ ସିଂହପୁର, କୋରାପୁଟ-୭୬୪୦୫୭*

## ⁂⁂ ସେ ଆସିଛି, କିଛି କରିବା ପାଇଁ



ଦିନେ ଜଣେ ଚିତ୍ରଶିଳ୍ପୀ, କଳାକାର ନିଜର କାମ ସାରି ଘରକୁ ଫେରୁଥିଲେ । ଘରେ ତାଙ୍କର ଅନେକ ଜରୁରି କାମ ଥିଲା । ରାସ୍ତାରେ ଜଣେ ସାତବର୍ଷର ଶିଶୁ ଅଟକାଇଦେଇ ତାଙ୍କୁ କହିଲା, "ମହାଶୟ ! ଆପଣ ଚିତ୍ର ଅଙ୍କନ କରି ଜାଣନ୍ତି କି ? ମୋର ଏଇ ଖାତାରେ ଜଣେ ଦେବଦୂତର ଚିତ୍ର ଦରକାର ଅଛି । ଚିତ୍ରଟି ନ ଦେଖାଇଲେ ଶିକ୍ଷକ ଆସନ୍ତାକାଲି ଗାଳିଦେବେ ।"

ଶିଶୁଟିର ଅନୁରୋଧକ୍ରମେ ଶିଳ୍ପୀଜଣକ ଘରକୁ ଯିବା କଥା ସଂପୂର୍ଣ୍ଣ ଭୁଲିଗଲେ । ପେନ୍‌ସିଲ୍ ଧରି ଖାତାରେ ଦେବଦୂତର ଚିତ୍ର ଅଙ୍କନ କରିଦେଲେ । ତା'ପରେ ଶିଶୁଟିକୁ କହିଲେ, "ପୁଅ ! ହରବରରେ ଚିତ୍ରଟି କରିଦେଇଛି, ମନକୁ ପସନ୍ଦ ହେଲା ତ ?"

ଦେବଦୂତର ଚିତ୍ର ଦେଖି ଶିଶୁଟି ଆଶ୍ଚର୍ଯ୍ୟ ହୋଇ କହିଲା, "ବହୁତ ଭଲ ହୋଇଛି । ଶିକ୍ଷକ ଆଉ ରାଗିବେ ନାହିଁ । ତୁମେ ଜଣେ ଭଲଲୋକ । ଆଜି ତୁମେ ଦେବଦୂତ ଭାବରେ ଆସି ମୋ ଖାତାରେ ଦେବଦୂତ

ଚିତ୍ର ଆଙ୍କିଦେଲ । ଏଣୁ ଅନେକ ଅନେକ ଧନ୍ୟବାଦ ଜଣାଉଛି ।" ଏହାକହି ଶିଳ୍ପୀଙ୍କୁ ଚୁମ୍ବନଟିଏ ଦେଇ ଶିଶୁଟି ଧାଇଁ ଧାଇଁ ପଳାଇଲା । ଶିଳ୍ପୀଜଣକ ଶିଶୁଟିର ଭାବନା, କଳ୍ପନାରେ ମୁଗ୍ଧ ହୋଇଗଲେ । ତାର ଧାଇଁବା ଦୃଶ୍ୟକୁ ଏକ ଲକ୍ଷ୍ୟରେ ଦେଖୁଥିଲେ । ତାଙ୍କରି ପାଟିରୁ ସ୍ୱତଃ ବାହାରିଆସୁଥିଲା, "ନା', ନା' ମୁଁ କଦାପି ଦେବଦୂତ ନୁହେଁ, ଏଇ ଶିଶୁଟି ହେଉଛି ଦେବଦୂତ, ସେ ଆସିଛି କିଛି କରିବା ପାଇଁ ।" ଏହିପରି ବାଉଳି ହେଉଥିବା ଶିଳ୍ପୀଜଣକ ଆଉ କେହି ନୁହନ୍ତି, ସେ ଥିଲେ ଇଟାଲୀର ମହାନ୍ ଚିତ୍ରଶିଳ୍ପୀ ମାଇକେଲ୍ ଏଞ୍ଜିଲୋ ।

--**ଶ୍ରୀ ଯୁଗଳ କିଶୋର ଷଡ଼ଙ୍ଗୀ,** *ନୀଳଚକ୍ର ନଗର, ଟିଟିଲାଗଡ଼*

---

## ଶବ୍ଦସନ୍ଧାନ--




ମଝି ଘରେ ଏମିତି ଗୋଟିଏ ଦୁଇ ଅକ୍ଷର ବିଶିଷ୍ଟ ଶବ୍ଦ ଲେଖନ୍ତୁ, ଯାହାକୁ ଦିଆଯାଇଥିବା ପ୍ରତ୍ୟେକ ଅକ୍ଷର ଆଗରେ ଲଗାଇଲେ ଆଉ ଗୋଟିଏ ଅର୍ଥପ୍ରକାଶକ ଶବ୍ଦ ହୋଇପାରିବ ଓ ଏହି ଶବ୍ଦଗୁଡ଼ିକର ଅର୍ଥ ବୁଝିବାକୁ ଯତ୍ନବାନ ହୁଅନ୍ତୁ ।

--**ସୁଭଦ୍ରା ବେହେରା,** *ଭଗତପୁର, କଟକ-୯*

*(ଉତ୍ତର ୩୨ ପୃଷ୍ଠାରେ)*

## କହିଲ କିଏସେ ସିଏ ?

**ଶ୍ରୀ ଶିବ ମିଶ୍ର**

ତିନି ଖଣ୍ଡି କାଠି ଯୋଡ଼ି
ପାହାଡ଼ ମାପିଲେ ବାଉଁଶ ନଳୀରେ
ଅନାଇ ଘଡ଼ିକି ଘଡ଼ି,
ଗ୍ରହନକ୍ଷତ୍ରର ପୋଥି ଲେଖିଦେଲେ
ଫିଟାଇ ଆକାଶ ପେଡ଼ି
ଉପାଧି ପାଇଲେ ଯିଏ,
କହିଲ କିଏସେ ସିଏ ?

କଳା ଘୋଡ଼ାଟିରେ ଚଢ଼ି
ସବୁ ଓଡ଼ିଆଙ୍କୁ ଏକାଠି କରିଲେ
ନୂଆ ରାଜ୍ୟ ଦେଲେ ଗଢ଼ି,
ଗରିବ ଲୋକଙ୍କୁ ନ୍ୟାୟ ଦେବା ପାଇଁ
ଓକିଲାତି ଥିଲେ ପଢ଼ି
ଜାତି-ଗୌରବ ଯିଏ,
କହିଲ କିଏସେ ସିଏ ?

ରୋଗିଣା ପୁଅକୁ ଛାଡ଼ି
ଧାଇଁଯାଇଥିଲେ ବନ୍ୟା ଅଂଚଳକୁ
ମାଡ଼ି ଆସୁ ଆସୁ ବଢ଼ି
ଇସ୍କୁଲ ନାମରେ ମଣିଷ ତିଆରି
କାରଖାନା ଥିଲେ ଗଢ଼ି
ଏ ମାଟିର ମଣି ଯିଏ,
କହିଲ କିଏସେ ସିଏ ?

*ବାଣପୁର, ଖୋରଧା*

# ଭଡ଼ଭଡ଼ିଆ ସାଙ୍ଗ

ଶ୍ରୀ ନିମାଇଁ ଚରଣ ଦାସ

ଆମ ସାଙ୍ଗ ଜଣେ ସନା ମହାପାତ୍ର
ବଡ଼ ବଡ଼ କଥା କହେ
ବାପା ଥିଲେ ତା'ର ଲଢୁଆ ପାଇକ
ମାମୁ ଜମିଦାରଟାଏ ।।
ମଉସା ତା' ଥିଲେ ବ୍ରିଟିଶ ସାଇବ
ପାଖରେ ଗୁମାସ୍ତା ଭଳି
ପ୍ରଜାମେଳି ବେଳେ ଗୋରାଙ୍କ ଆଦେଶେ
ମାରିଚନ୍ତି ତାଙ୍କୁ ଗୁଳି ।।
ଆପଣା ତୁଣ୍ଡରେ ଫୁଟାଣି ମାରିଲେ
ସନା ଖାଲି କହିହୁଏ
ଏମେ ପଢ଼ିଛି ମୁଁ ଇଂରାଜୀ ଭାଷଣ
ମୋ' ପରି ଦବ କିଏ ?
ମୁଁ ଯେଡ଼େ ସାହସୀ ଏମିତି ସାହସ
କାହାର ଅଛିଟି କୁହ
ଆପଣା ପ୍ରଶଂସା କହୁକହୁ ତା'ର
ନାଲି ପଡ଼ିଆସେ ମୁହଁ ।।
କହନ୍ତେ ବାଜେନା ପାଟିରେ ବାଟୁଳି
ନିଃଶ୍ୱାସ ଆସଇ ସରି
ଆଖିକି ତରାଟି ଫଁ ଫଁ ହୁଏ
ଯିବକି ସେଇନେ ମରି ।।
ଦଉଡ଼ିବି ଯେବେ ଖେଳ ପଡ଼ିଆରେ
କେହି ନ ପାରିବେ ଟପି
ସନା କହେ; କେହି ଜାଣିପାରିବେନି
ପରୀକ୍ଷାରେ କଲେ କପି ।।



ଦେଖିଛୁ ତ ଆମେ ସନାର ଦଉଡ଼ା
ଚଢ଼େଇର ଖଣ୍ଡି ଉଡ଼ା
କେତେ ପରୀକ୍ଷାରେ ଧରାପଡ଼ି ସନା
ଖାଉଥାଏ କାନ ମୋଡ଼ା ।।
ଦିନେ ଦିନେ ପୁଣି ଆମକୁ ବସେଇ
ଭାରି ଆଷ୍ଟ କରି କହେ
'ଯଦି ମୁଁ କଷିବି ନିଶ୍ଚୟ ରଖିବି
ଅଙ୍କରେ ଶହେକୁ ଶହେ ।।'
ଆମେ ଜାଣୁ ପରା ଅଙ୍କକଷା ଧାରା
ସନାକୁ ତ ଜଣା ନାହିଁ
କାଗଜ ଫର୍ଦକେ ଲେଖେ କାଟେ ଲେଖେ
ଉତ୍ତର ମିଳିବା ପାଇଁ ।।
ହିନ୍ଦୀ ଗୀତ ବୋଲେ ବିରାଟ ପାଟିରେ
ସେତିକିରେ ତା'ର ଗଉଁ
କେଜାଣି ମଧୁର ତାହାଠୁଁ ଶୁଭନ୍ତା
ଭୁଆଁ ବିଲେଇର ମେଉଁ ।।

କେବେ କେବେ କହେ ବାହାଦୁରି ମାରି
ମୁରୁକି ମୁରୁକି ହସି
କିଏ ସେ ଯାଇଛ ମୋ ପରି ତୁମେ
ଉଡ଼ାଜାହାଜରେ ବସି ।।
ଜାଣନା ତୁମେ ମୋ ଭେଣେଇଙ୍କ ସାଙ୍ଗ
ସିନେମାରେ ହିରୋ ହୁଏ
ହାରମାନି ଶିଖି ସାନ ଭଉଣୀ ମୋ
ଭଜନ ଓଡ଼ିଶୀ ଗାଏ ।।
ଆମେ ଜାଣୁ ସନା ଯେଉଁ କାମ ଧରେ
ସବୁକାମ ହୁଏ ମାଟି
ତଥାପି ତା ମୁଣ୍ଡ ଗର୍ବରେ ଭର୍ତ୍ତି
ସତେକି ପଡ଼ିବ ଫାଟି ।।

ବଡ଼ ହେଉ ଅବା ନ ହେଉ ସନାଟା
ବଡ଼ ବୋଲି କହି କହି
ଦୂରେଇ ରହିଲା ଯହୁଁ ଆମେ ତାକୁ
ସାଙ୍ଗରେ ଗଣିଲୁ ନାହିଁ ।।
ଭଡ଼ ଭଡ଼ ହେଇ ବଡ଼ ବଡ଼ କହି
ନିଜକୁ ବଢ଼େଇ ବେଶି
ଆମ ବନ୍ଧୁତାର ଛୋଟ ବଖରାକୁ
ସନା ପାରିନାହିଁ ପଶି ।।

*ସରସ୍ୱତୀ ସଦନ, ୧୭୮୮/୨୯୫୨, ଟେଲିକମ୍ କଲୋନି,*
*ଶିଶୁପାଳଗଡ଼, ଭୁବନେଶ୍ୱର- ୭୫୧୦୦୨*



**ଗତିଶୀଳ ପୋଲ** -- *(ପୂର୍ବରୁ ଜୁଲାଇ ମାସରେ ପ୍ରକାଶିତ ସେହିପରି ଆଉ କେତେକ ପୋଲ ବିଷୟରେ....) ଏହି ପୋଲ ଉପରେ ପଥଚାରୀ, ସାଇକେଲ ଆରୋହୀ ଏବଂ କାର୍‌ସବୁ ସ୍ୱଚ୍ଛନ୍ଦରେ ଯାତ୍ରା କରିପାରିବେ ଏବଂ ଦରକାର ହେଲେ ସଙ୍ଗେ ସଙ୍ଗେ ଏହି ପୋଲକୁ ଅକ୍ଲେଶରେ ଘୁଞ୍ଚାଯାଇ କେନାଲ ଜଳରେ ଚଳପ୍ରଚଳ କରୁଥିବା ଛୋଟ ଜାହାଜ ପାଇଁ ବାଟ ଖୋଲି ଦିଆଯାଇପାରିବ ।*

୪) କୋରିନ୍ଥ୍ କେନାଲ, ଗ୍ରୀସ୍‌ର ସବମର୍ସିବ୍‌ଲ ପୋଲ (Submersible Bridge)– ଏହି ପୋଲ ୧୮୮୧ ଏବଂ ୧୮୯୩ ମଧ୍ୟରେ ନିର୍ମିତ ହୋଇଥିଲା । କୋରିନ୍ଥ୍ କେନାଲ ନିର୍ମିତ ହେବା ପୂର୍ବରୁ ଜାହାଜ-ଯାତ୍ରୀମାନଙ୍କୁ ପେଲୋପୋନେସିଆନ୍ ପେନିନ୍‌ସୁଲା ବାଟ ବୁଲି ୭୦୦କି.ମି. ଯାତ୍ରା କରିବାକୁ ପଡୁଥିଲା । କେନାଲରେ ଏହି ସବମର୍ସିବ୍‌ଲ ପୋଲ ହେବା ପରେ ଯାତ୍ରୀମାନଙ୍କ ପାଇଁ ବହୁତ ସୁବିଧା ହୋଇପାରିଲା । ଏହି ପୋଲକୁ ଜାହାଜ ଯିବା ସମୟରେ ୮ ମିଟର ଜଳ ମଧ୍ୟରେ ତଳକୁ ଖସାଇଦିଆଯାଏ ଏବଂ ବିରାଟ ଜାହାଜ ସବୁ ଚାଲିଗଲା ପରେ ପୁଣି ପୂର୍ବସ୍ଥାନକୁ ଅଣାଯାଇ ପୋଲର କାମ କରେ ।

୫) ଆର୍ଜେଣ୍ଟିନାର ପୁଏଣ୍ଟେ ଡି ଲା ମୁଜର ପୋଲ– ଏହି ଘୂର୍ଣ୍ଣନ ପାଦଚଲା ପୋଲଟିକୁ ସ୍ପେନୀୟ ଭାଷାରେ 'ଦ ଓମେନ୍‌ସ ବ୍ରିଜ୍'(The Womens Bridge) ରଖାଯାଇଛି । ଏହି ୮୦୦ ଟନ୍‌ର ପଥଚଲା ପୋଲଟିର ଦୁଇଟି ପାଖରେ ସ୍ଥାୟୀ ବିଭାଗ ରଖାଯାଇଛି ଏବଂ ଦରକାର ସମୟରେ ଏହାର ମଧ୍ୟଭାଗ ୯୦° ଘୂରିଯାଇ ଜଳଯାନଗୁଡ଼ିକ ପାଇଁ ରାସ୍ତା ଛାଡ଼ିଦିଏ ।

(ପୋଲ ଦୁଇଟିର ଚିତ୍ର ପ୍ରଚ୍ଛଦ ୨ୟ ପୃଷ୍ଠାରେ ଦିଆଯାଇଛି)

# ମହାଶୂନ୍ୟରେ ଗ୍ରହାଣୁ ସହିତ ଲଢ଼ାଇ

ଡ. ମହାପାତ୍ର ଆନନ୍ଦଶଙ୍କର ମିଶ୍ର

ରତନ ଓ ତାର ସାଙ୍ଗମାନେ ଭୁବନେଶ୍ୱରରେ ଆରମ୍ଭ କରିଥିବା 'ଜୁନିୟର ସାଇନସ୍ କ୍ଲବ୍'କୁ ଏ ମାସ ରାଣୀହାଟ ହାଇସ୍କୁଲର ବିଜ୍ଞାନ ଶିକ୍ଷକ ଆଶୋକବାବୁ ଆସିଛନ୍ତି । ଅଶୋକବାବୁ ଗ୍ରହାଣୁମାନଙ୍କ ସମ୍ପର୍କରେ ରୋମାଞ୍ଚକାରୀ କାହାଣୀ କହିବେ ଶୁଣି ବହୁ ସଂଖ୍ୟାରେ ପିଲା କ୍ଲବ୍‌କୁ ଆସିଥା'ନ୍ତି । ଅଶୋକବାବୁ ଠିକ୍ ଚାରିଟାବେଳେ ତାଙ୍କ ଭାଷଣ ଆରମ୍ଭ କଲେ–

ତିରିଶ ମିଟର ବା ତା'ଠାରୁ ଅଧିକ ବ୍ୟାସର ଗ୍ରହାଣୁଗୁଡ଼ିକ ବେଳେବେଳେ ପୃଥିବୀଠାରୁ ୭୫ ଲକ୍ଷ କିଲୋମିଟର ଦୂରତା ମଧ୍ୟକୁ ଆସିଯା'ନ୍ତି । ଏତିକିବେଳେ ଏମାନଙ୍କର ପୃଥିବୀ ସହିତ ଧକ୍କା ଖାଇବାର ସମ୍ଭାବନା ଅଧିକ । ବିଭିନ୍ନ ଯନ୍ତ୍ର ସାହାଯ୍ୟରେ ଜଟିଳ ଅଙ୍କ କଷି ଗ୍ରହାଣୁମାନେ ପୃଥିବୀ ସହିତ ଧକ୍କା ଖାଇବେ କି ନାହିଁ, ସେ କଥା ବୈଜ୍ଞାନିକମାନେ ଜାଣିପାରନ୍ତି ।

ଅନ୍ୟାନ୍ୟ ସଂକେତକୁ ଛାଡ଼ିଦେଲେ, ଗ୍ରହାଣୁଗୁଡ଼ିକ ରଙ୍ଗରୁ ମଧ୍ୟ ଏକଥା ଜଣାପଡ଼େ । ଗ୍ରହାଣୁର ରଙ୍ଗ ଯଦି ଲାଲ୍ ହୁଏ, ତାହାହେଲେ ଏହି ଗ୍ରହାଣୁ ୧୦,୦୦୦ ବର୍ଷରୁ ୧୦୦,୦୦୦ ବର୍ଷ ମଧ୍ୟରେ ପୃଥିବୀ ସହିତ ଧକ୍କା ଖାଇବାର ନିଶ୍ଚିତ ସମ୍ଭାବନା ଥାଏ । ଯଦି ରଙ୍ଗ ହଳଦିଆ ହୁଏ, ତାହାହେଲେ ବୈଜ୍ଞାନିକମାନେ ସେହି ଗ୍ରହାଣୁ ସମ୍ପର୍କରେ ଅଧିକ ଅନୁଧ୍ୟାନ କରନ୍ତି । ଆଉ ଗ୍ରହାଣୁର ରଙ୍ଗ ଧଳା ହେଲେ, ସେମାନେ ନିଶ୍ଚିତ ହୁଅନ୍ତି ଯେ ପୃଥିବୀ ସହିତ ଏହାର ସଂଘର୍ଷର କୌଣସି ସମ୍ଭାବନା ନାହିଁ । ବର୍ତ୍ତମାନ ସବୁଠୁ ବଡ଼ କଥା ହେଲା, ଯେଉଁ ଗ୍ରହାଣୁଗୁଡ଼ିକର ପୃଥିବୀ ସହିତ ସଂଘର୍ଷର ସମ୍ଭାବନା ରହିଛି, ସେମାନଙ୍କୁ ବାଧାଦେବା ପାଇଁ ବୈଜ୍ଞାନିକମାନେ କ'ଣ କରୁଛନ୍ତି ?

ଫ୍ରାନସ୍‌ର ଜଣେ ବିଖ୍ୟାତ ଶିଶୁ ସାହିତ୍ୟିକ 'ଦି ଲିଟିଲ୍ ପ୍ରିନସ୍' ନାମକ ଏକ ବୈଜ୍ଞାନିକ କାହାଣୀ ଲେଖିଛନ୍ତି । ଏହି ବହୁ ପଠିତ କାହାଣୀରେ 'ବି:୬୧୨' ନାମକ ଏକ ଗ୍ରହାଣୁର କଥା ରହିଛି, ଯାହା ପୃଥିବୀ ସହିତ ଧକ୍କା ଖାଇବାକୁ ଆଗେଇ ଅସୁଛି । ବୈଜ୍ଞାନିକମାନେ କିପରି ଏହା କବଳରୁ ପୃଥିବୀକୁ ରକ୍ଷା କରିଛନ୍ତି, ତାର କାଳ୍ପନିକ ରୋମାଞ୍ଚକର ବିବରଣୀ ଏ କାହାଣୀରେ ଦିଆଯାଇଛି ।

ଏ ତ ହେଲା କାଳ୍ପନିକ କାହାଣୀ । ପ୍ରକୃତରେ ମଧ୍ୟ ବୈଜ୍ଞାନିକମାନେ ବିପଜ୍ଜନକ ଗ୍ରହାଣୁମାନଙ୍କୁ ବାଧାଦେବା ପାଇଁ ଯେଉଁ ନୂଆ ପରିକଳ୍ପନା କରିଛନ୍ତି, ତା ନାଆଁ ବି ଦେଇଛନ୍ତି 'ବି:୬୧୨' । ଏ ପରିକଳ୍ପନା ଅନୁଯାୟୀ ଏ ଧରଣର ଗ୍ରହାଣୁ ନିକଟକୁ ଏକ ମହାକାଶଯାନ ପଠାଯିବ । ଏହା ଯାଇ ଗ୍ରହାଣୁ ସହିତ ଯୋଡ଼ିଯିବ । ଏ ମହକାଶଯାନରେ ରହିଥିବ ଏକ ପରମାଣୁ ଚୁଲି, ଯାହା ଉତ୍ତପ୍ତ ପ୍ଲାଜ୍‌ମା (ତଡ଼ିତଯୁକ୍ତ ପରମାଣୁ କଣା) ତିଆରି କରେ । ଏହି ପ୍ଲାଜ୍‌ମା ସ୍ରୋତର ଧକ୍କାରେ ଗ୍ରହାଣୁର ଗତିପଥ ଧୀରେ ଧୀରେ ବଦଳିଯିବ ।



ତୁମେ ସବୁ ପଢ଼ିଛ ଯେ ନିଜ କକ୍ଷପଥରେ ପୃଥିବୀ ଏକ ସେକେଣ୍ଡରେ ୨୯.୮ କିଲୋମିଟର ଗତି କରେ । ପୃଥିବୀର ବ୍ୟାସ ୧୨,୮୦୦ କିଲୋମିଟର । ଏଣୁ ନିଜର ବ୍ୟାସାର୍ଦ୍ଧ ପରିମାଣ ଦୂରତ୍ୱ ଯିବା ପାଇଁ ପୃଥିବୀକୁ ଲାଗେ ୨୧୫ ସେକେଣ୍ଡ୍ । ପୃଥିବୀ ସହିତ ଗ୍ରହାଣୁଟିର ସଂଘର୍ଷ ସେତିକିବେଳେ ହେବା କଥା, ଯେତେବେଳେ ପୃଥିବୀ ଓ ଗ୍ରହାଣୁ ମହାଶୂନ୍ୟରେ ନିଜନିଜର କକ୍ଷପଥରେ ଘୂରୁଥିବାବେଳେ ଗୋଟିଏ ବିନ୍ଦୁରେ ପହଞ୍ଚିବେ । ଗ୍ରହାଣୁଟିର କକ୍ଷପଥ ଯଦି ବଦଳାଇ ଦିଆଯାଏ, ଅର୍ଥାତ୍ ଗ୍ରହାଣୁଟି ଯଦି ସେହି ବିନ୍ଦୁରେ ୨୧୫ ସେକେଣ୍ଡ୍ ଆଗରୁ ବା ୨୧୫ ସେକେଣ୍ଡ୍ ପରେ ପହଞ୍ଚିବ, ତା'ହେଲେ ପୃଥିବୀ ସହିତ ତା'ର ସଂଘର୍ଷ ହେବନାହିଁ ।

ଉତ୍ତପ୍ତ ପ୍ଲାଜ୍‌ମା ସ୍ରୋତରେ ଧକ୍କା ଦେଇ ଦେଇ ଗ୍ରହାଣୁଟିର ଗତିବେଗକୁ ଖୁବ୍ ଧୀରେ ଧୀରେ ବଢ଼ାଇବାକୁ ପଡ଼ିବ । ବୈଜ୍ଞାନିକମାନେ ହିସାବ କରିଛନ୍ତି ଯେ ୧୦ ବର୍ଷ କାଳ ଧକ୍କା ହେବା ପରେ ଗ୍ରହାଣୁଟିର କକ୍ଷପଥର ଆକାର ବଢ଼ିଯିବ ଓ ପୃଥିବୀ ସହିତ ଏହାର ସଂଘର୍ଷ ହେବନାହିଁ । କହିବା ପରେ ଅଶୋକବାବୁ ଟିକିଏ ନୀରବ ହେଲେ ।

ଅଭିଜିତ କ୍ଲବ୍‌ର ସେକ୍ରେଟାରୀ । ସେ ଠିଆ ହୋଇ କହିଲା, "ସାର ! ବିପଜ୍ଜନକ ଗ୍ରହାଣୁମାନଙ୍କୁ ତ ମହାଶୂନ୍ୟରେ ଧ୍ୱଂସ କରାଯାଇପାରନ୍ତା ?" ଅଶୋକବାବୁ କହିଲେ– ତୁମମାନଙ୍କ ମଧ୍ୟରୁ ଅନେକ 'ଷ୍ଟାରଓ୍ୱାର୍', 'ଆର୍ମା ଗାର୍ଡନ୍' ପ୍ରଭୃତି ଏହି ଧରଣର ଚଳଚ୍ଚିତ୍ର ଦେଖିଥିବ । ଏ ସବୁ କାଳ୍ପନିକ କାହାଣୀ । ବାସ୍ତବରେ ବୈଜ୍ଞାନିକମାନେ ମଧ୍ୟ ମହାଶୂନ୍ୟରେ ଗ୍ରହାଣୁଙ୍କୁ ଧ୍ୱଂସ କରିବା ପାଇଁ ଉପାୟ ବାହାର କଲେଣି ।

ଆଜି ତ ସମୟ ହେଲାଣି । ଆସନ୍ତା ଥର ମୁଁ ତୁମମାନଙ୍କୁ ଏ ସମ୍ପର୍କରେ କହିବି ।

*ବୈରାମନଗର ଛକ, ବାଲେଶ୍ୱର- ୩*




ଶ୍ରୀ ଜ୍ୟୋତିରଂଜନ ବିଶ୍ୱାଳ

୧ । ପାଣିର ଗଭୀରତା ମାପ କରିବା ପାଇଁ କେଉଁ ଯନ୍ତ୍ର ବ୍ୟବହାର କରାଯାଇଥାଏ ?

୨ । ଭାରତର ଦୀର୍ଘତମ ହୀମବାହର ନାମ କ'ଣ ?

୩ । ମାଡ୍ରାସ ରାଜ୍ୟର ନୂତନ ନାମ ଚେନ୍ନାଇକୁ କେବେ ପରିବର୍ତ୍ତିତ ହୋଇଥିଲା ?

୪ । କ୍ରମାନ୍ୱୟରେ ଦୁଇଥର ଭାରତର ଉପ-ରାଷ୍ଟ୍ରପତି ପଦବୀ ଅଳଙ୍କୃତ କରିଥିବା ବ୍ୟକ୍ତିଙ୍କର ନାମ କ'ଣ ?

୫ । 'ପ୍ରିନ୍‌ସ୍ ଅଫ୍ ଓ୍ୱେଲସ୍ କପ୍' କେଉଁ ଖେଳ ସହିତ ସଂପୃକ୍ତ ?

୬ । କେଉଁ ଦେଶ ପୃଥିବୀର ସର୍ବାଧିକ ସୁନା ଉତ୍ପାଦନକାରୀ ଦେଶ ଭାବରେ ମାନ୍ୟତା ଲାଭ କରିଛି ଏବଂ ଏହି ଦେଶର କେଉଁ ସହର ପୃଥିବୀର ହୀରକ ରାଜଧାନୀ ଭାବରେ ପରିଚିତ ?

୭ । 'ଅମୃତଫଳ' ଉପନ୍ୟାସ ପୁସ୍ତକର ରଚୟିତା କିଏ ଏବଂ ସେଥିପାଇଁ ତାଙ୍କୁ କେଉଁ ସମ୍ମାନ ମିଳିଥିଲା ?

୮ । କେଉଁ ଗଛ ସବୁଜସ୍ୱର୍ଣ୍ଣ ଭାବରେ ପରିଚିତ ?

୯ । କେଉଁ ପ୍ରାଣୀର ଚିତ୍ରକୁ 'ବିଶ୍ୱ ବନ୍ୟଜନ୍ତୁ ଫଣ୍ଡ୍'ର ଲୋଗୋ ଭାବରେ ଗ୍ରହଣ କରାଯାଇଛି ?

୧୦ । FIREର ପୂର୍ଣ୍ଣ ରୂପଟି କ'ଣ ?

*ଦୁର୍ଗାପୁର, ତାଳଚେର, ଅନୁଗୁଳ- ୭୫୯୧୦୦*

*(ଉତ୍ତର ୪୯ ପୃଷ୍ଠାରେ)*



# ଆମ ଗାଁ'ର ଫୁଲ

ଶ୍ରୀମତୀ ଶୈଳବାଳା ରାଉତ

କୋରାପୁଟ ଜିଲ୍ଲାର ଆଦିବାସୀ ସମ୍ପ୍ରଦାୟର ଝିଅଟିଏ । ନାଁ ତାର ଫୁଲ । ଭାରି ସରଳ, ଭାରି ନିରୀହ । ଚାଟଶାଳୀ ପାଠ ସରିବା ଦିନଠୁ ସେ ବିଦ୍ୟାଳୟର ଦୁଆର ମାଡ଼ିନି । ବାପା ତା'ର କହେ, "ବଣକୁ ଯାଆ । କାଠପତର ଗୋଟା । ମହୁଲ ଫୁଲ ଖୁଣ୍ଟ ।" ମା'କହେ, "ଝିଅ ପିଲାଟା । ଆମ ଜାତିରେ ପାଠ କ'ଣ ହେବ ? ଘର କାମରେ ମନ ଦେ । ଗୋବରଘସି ଗୁଣ୍ଡା । ଭାତ ରାନ୍ଧ । ସାନଭାଇର ଯତ୍ନ ନେ । ଆଉ ଘରେ ବସି ମସିଣା, ହେଂସ ବୁଣ ।"

କିନ୍ତୁ ଫୁଲର ମନ ସବୁବେଳେ ପାଠପଢ଼ାରେ । ଗାଁ'ର କମଳିଦିଦି ଫୁଲକୁ ଭାରି ଭଲପାଆନ୍ତି । ତା ବାପା ଓ ମା'ଙ୍କ ଅନୁପସ୍ଥିତିରେ ତା'ଘରକୁ ଯା'ନ୍ତି । ପାଠ ପଢ଼େଇ ଦିଅନ୍ତି । ଶ୍ରେଣୀ ଉତ୍ତୀର୍ଣ୍ଣ ସିନା ତା'ର ହୁଏନାହିଁ; କିନ୍ତୁ ପଞ୍ଚମଶ୍ରେଣୀ ପର୍ଯ୍ୟନ୍ତ ପାଠ ତା' ଜିଭ ଅଗରେ । ତା'ବୁଦ୍ଧି ଓ ଜ୍ଞାନକୁ ଦେଖି କମଳିଦିଦି ତାକୁ ପ୍ରଶଂସା ନ କରି ରହିପାରନ୍ତି ନାହିଁ । ବେଳେବେଳେ ବାଟଘାଟରେ ଫୁଲର ମା'ଓ ବାପାଙ୍କ ସଙ୍ଗରେ ଭେଟ ହୋଇଗଲେ କହନ୍ତି, "ଆରେ ତୁମେ ଦୁହେଁ ଜାଣିଛ, ଏବେ ପରା ପିଲାଙ୍କ ପାଠ ପଢ଼ିବା ପାଇଁ ସରକାର ସବୁ ସୁବିଧା କରିଦେଲେଣି । ପାଠପଢ଼ା ବହିଠାରୁ ଆରମ୍ଭ କରି ଖାଦ୍ୟ, ଜାମା, ସାଇକେଲ୍ ପର୍ଯ୍ୟନ୍ତ ସବୁ ମାଗଣା । ସେଇକଥାକୁ ତୁମେ ଦୁହେଁ ହେଜୁନ କାହିଁକି ?" ସବୁ ଶୁଣନ୍ତି ଦୁହେଁ । ଆଡ଼ କରି ଚାଲିଯାଆନ୍ତି ନିଜ ବାଟରେ ।

ଦିନେ ଗୋଟେ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଲା । ଏଇ ବର୍ଷ ଖରା ଦିନ । ପ୍ରବଳ ଗରମ ସାଙ୍ଗକୁ ଟାଣ ଖରା । ଗାଁ'ର ପୋଖରୀ, କୂଅ, ନାଳ ସବୁ ଶୁଖିଲା । ଗାଁଲୋକେ ପାଣି ଟୋପାଏ ପାଇଁ ଡହଳବିକଳ ହେଉଥାନ୍ତି । ପିଇବାପାଣି ପାଇଁ ଉଚ୍ଚ ପାହାଡ଼ ଉପରକୁ ଯିବାକୁ ଭାରି କଷ୍ଟ । ଗୋଟିଏ ଘଣ୍ଟା ଉପରକୁ ଉଠିବାକୁ, ତଳକୁ ଆସିବାକୁ ଆଉ ଘଣ୍ଟାଏ । ଫୁଲ ସେଥିରୁ ବାଦ୍ ପଡ଼ିନି । ସେ ବି ଭାରି କଷ୍ଟ ଭୋଗୁଥାଏ । ସେଦିନର କଥା କିନ୍ତୁ ଅଲଗା ଥିଲା । ଏସବୁ ଥିଲା ବୁଦ୍ଧିମତୀ ଫୁଲର କଥା । ଗାଁ'ର ଝିଅବୋହୂଙ୍କୁ ଧାଡ଼ି କରି ଠିଆ କରିଦେଇଥାଏ । ପାହାଡ଼ ତଳୁ ପାହାଡ଼ ଉପର ଝରଣା ପର୍ଯ୍ୟନ୍ତ । ସମସ୍ତଙ୍କ ହାତରେ ଗରା, ବାଲଟି । ଜଣେ ଆଉ ଜଣଙ୍କୁ ପାଣି ଭର୍ତ୍ତି ଗରା ଓ ବାଲଟି ବଢ଼ାଇ ଦେଉଥାଏ । ଝରଣା ପାଖରୁ ପାହାଡ଼ ତଳ ପର୍ଯ୍ୟନ୍ତ ପାଣି ଖୁବ୍ ସୁବିଧାରେ ଅଳ୍ପ ପରିଶ୍ରମରେ ତଳେ ପହଞ୍ଚି ଯାଉଥାଏ ।

କମଳିଦିଦି ଠିକ୍ ସେହି ସମୟରେ ସେହି ବାଟ ଦେଇ ସ୍କୁଲକୁ ଯାଉଥାନ୍ତି । ଆଶ୍ଚର୍ଯ୍ୟ ହୋଇଗଲେ ଏସବୁ ଦେଖି । ଅଟକିଗଲେ । ତଳେ ଥିବା ଝିଅଟିକୁ ପଚାରିଲେ, "ଆରେ ତୁମେମାନେ କ'ଣ ଏ ଖରାଦିନେ ଏମିତି ଉପାୟରେ ପାଣି ସଂଗ୍ରହ କରୁଛ ?"

ସଙ୍ଗେ ସଙ୍ଗେ ଝିଅଟି କହି ପକାଇଲା, "ଦିଦି ସରକାରଙ୍କୁ ପାଣି ପାଇଁ ଚିଠି ଲେଖି ଲେଖି ତ ଆମ ଗାଁ ସରପଞ୍ଚ ଥକି ଗଲେଣି । ସବୁ ଆଶାଭରସା ଦେଇ ଚୁପ୍ ହୋଇ ରହି ଯାଉଛନ୍ତି । ଆମେ ବା କରିବା କ'ଣ ? କିନ୍ତୁ ଏଇ କେତେଦିନ ହେଲା ଆଉ ଆମକୁ ପିଇବା ପାଣି ପାଇଁ ଅସୁବିଧା ଭୋଗିବାକୁ ପଡୁନାହିଁ । ତାହା କେବଳ ଆମ ଫୁଲଦିଦି ପାଇଁ ସମ୍ଭବ ହୋଇ ପାରିଛି । ଏ ଯେଉଁ ଦେଖୁଛନ୍ତି ଆମ ଧାଡ଼ି ବାନ୍ଧି ପାଣି ବୋହିବା କାମ, ଏ ସବୁ ସେଇ ଫୁଲଦିଦିର ବୁଦ୍ଧି । ସେ ଆମକୁ ଏଇ ସହଜ ଓ ସରଳ ଉପାୟ ଶିଖାଇ ଦେଇଛି । ତେଣୁ ତା'ର ପ୍ରଶଂସା ଆମ ସଭିଙ୍କ ମୁହଁରେ । ଫୁଟିଲା ଫୁଲ ପରି ତା'ର ମହକ ଆମ ଗାଁ'ରୁ ଅନ୍ୟ ଗାଁ'କୁ ବି ପ୍ରସାର ହେଲାଣି ।"

ହସି ଉଠିଲେ କମଳିଦିଦି ଝିଅଟିର କଥା ଶୁଣି । ମନ ତାଙ୍କର ଗର୍ବରେ ଫୁଲି ଉଠୁଥାଏ । ମନେପଡ଼ିଗଲା ତାଙ୍କର ଫୁଲକୁ ପଢ଼ାଉଥିବା କଥାଟି । 'ପଦାର୍ଥ ଭିତରେ ତାପର ପରିବହନ' କଥା । କେମିତି ଲୁହାଦଣ୍ଡଟିଏ ଗରମ କଲେ ତା'ର ତାପ ଉତ୍ତପ୍ତ ମୁଣ୍ଡରୁ ଶୀତଳ ମୁଣ୍ଡକୁ ଦଣ୍ଡ ମାଧ୍ୟମରେ ସଞ୍ଚରିତ ହୁଏ । ଏ ତ ଠିକ୍ ସେହିପରି କଥା । ଜଣେ ଗୋଟିଏ ସ୍ଥାନରୁ ସ୍ଥାନାନ୍ତରିତ ନ ହୋଇ ମଧ୍ୟ ଅଳ୍ପ ପରିଶ୍ରମରେ ପାଣି ପାହାଡ଼ ତଳରେ ଥିବା ବ୍ୟକ୍ତି ପାଖରେ ସହଜରେ ପହଞ୍ଚି ଯାଇ ପାରୁଛି । ପିଲାଟିର ବୁଦ୍ଧିକୁ ତାରିଫ୍ କରିବାର କଥା । ବିଜ୍ଞାନକୁ ସେ ନିତ୍ୟ ବ୍ୟବହାର କାର୍ଯ୍ୟରେ ମଧ୍ୟ ଲଗାଇ ପାରିଛି ।

ଏତିକିବେଳେ ପାଖରେ ଠିଆ ହୋଇଥିବା ଝିଅଟି କମଳିଦିଦିଙ୍କୁ ହଲାଇଦେଇ କହିଲା, "ଦିଦି କେବଳ ସେତିକି ନୁହେଁ, ଆହୁରି ଅନେକ କଥା ଫୁଲଦିଦି ଆମକୁ ଶିଖାଇଛନ୍ତି । ପାଣିକୁ ଫୁଟାଇ କରି ଛାଣି କରି ପିଇବ । ମନେପକାଇ ଦେଇଛି ଆମ ଗାଁର ପୂର୍ବ ବର୍ଷ ହୋଇଥିବା ହଇଜା, ମିଳିମିଳା, କାମଳ ରୋଗର କଥା । ସଭିଏଁ ଏବେ ଖୁବ୍ ସତର୍କ । ଫୁଲଦିଦିର କଥାକୁ ସଭିଏଁ ଅକ୍ଷରେ ଅକ୍ଷରେ ପାଳନ କରୁଛନ୍ତି ।''

ବଣମଲ୍ଲୀ ବଣରେ ଫୁଟେ; କିନ୍ତୁ ତା'ର ବି ମହକ ଅଛି । ସେମିତି ବଣପାହାଡ଼ ଘେରା ଆଦିବାସୀ ଝିଅ ଫୁଲର ମହକ ସହର ପର୍ଯ୍ୟନ୍ତ ପ୍ରସରିଗଲା । ଗାଁ'କୁ ସୁଅ ଛୁଟିଲା ସରକାରୀ ବାବୁମାନଙ୍କର । ତା'ସହିତ ବିଭିନ୍ନ ଅନୁଷ୍ଠାନ, ଟେଲିଭିଜନ, ପତ୍ରପତ୍ରିକା ଓ ବିଭିନ୍ନ ଗଣମାଧ୍ୟମର ପ୍ରତିନିଧିମାନଙ୍କର ମୁହଁରେ ଫୁଲର ପ୍ରଶଂସା । ସରକାରୀ ସାହାଯ୍ୟ ନ ପାଇ ବି ଗାଁ'ଟିରେ ଆଜି ପାଣିର ଅଭାବ ନାହିଁ । ଲୋକମାନେ ବି ସ୍ୱଚ୍ଛ, ପରିଷ୍କାର ପାଣି ପିଇ ରୋଗରୁ ମୁକ୍ତ ହୋଇପାରିଛନ୍ତି ।

ବାସ୍ ତା'ପରେ ସବୁଠି ଫୁଲ ପ୍ରଶଂସା । ଗାଁ'ର ଉନ୍ନତି ସହିତ ତା'ର ପାଠପଢ଼ା ପାଇଁ ବିଭିନ୍ନ ଅନୁଷ୍ଠାନରୁ ବିଭିନ୍ନ ସହଯୋଗ ପହଞ୍ଚିଗଲା । ଏବେ ଫୁଲ ପାଇଁ ଅର୍ଥର ଅଭାବ ନାହିଁ । ଏବେ ସେ ପଢ଼ିବ । ବହୁତ ପଢ଼ିବ । କମଳିଦିଦିଙ୍କର ପ୍ରତିଜ୍ଞା– ଆମ ଗାଁ'ର ଫୁଲ ଆହୁରି ମହକିବ । ଦୁନିଆ ଦେଖିବ ।– ଏଇ ଆଦିବାସୀ ସରଳ, ନିରୀହା ଝିଅ ଦିନେ ସଭିଙ୍କର ଆଦରର ପ୍ରିୟ ଫୁଲ ହୋଇ ଝଟକୁଥିବ । ଏଇଟା କେବଳ କମଳିଦିଦିଙ୍କର ପ୍ରତିଜ୍ଞା ନୁହେଁ, ଫୁଲର ବି ଅଟଳ ପ୍ରତିଜ୍ଞା ।

*ଡାକ୍ତର ଫିଲିପ୍ସ୍ ରାଉତରାୟ, କ୍ରିସେଣ୍ଟ ଟାୱାର, ଫ୍ଲାଟ୍ ନଂ. ୪୭୬ / ୪୭୭, ବମିଖାଲ, ଭୁବନେଶ୍ୱର*

# ବୁଢ଼ୀ ଅସୁରୁଣୀ

ବିଜୟଲକ୍ଷ୍ମୀ ଆଚାର୍ଯ୍ୟ

ଗୋଟିଏ ଗ୍ରାମରେ ରାଧୁ ବୋଲି ଗରିବ ପିଲାଟିଏ ଥାଏ । ଛୋଟବେଳୁ ବାପା ତାର ନାହାନ୍ତି । ମା'ତାର ରୋଗିଣା । ତେଣୁ ପାଠପଢ଼ାରେ ତାର ଡୋରି ବନ୍ଧା ହୋଇଥାଏ । ସେ ପ୍ରତିଦିନ ଗାଈ ଚରାଇବାକୁ ବଣକୁ ଯାଏ । ମା'ତାକୁ ସବୁଦିନେ ପିଠା କରି ଦିଅନ୍ତି ଦୁଇପ୍ରହରରେ ଖାଇବାକୁ ।

ସେ ସବୁଦିନେ ଗାଈ ଚରାଏ ଓ ଦୁଇପ୍ରହର ହେଲେ ପିଠା ଖାଇ ପାଣି ପିଇ ଆନନ୍ଦ ମନରେ ବଇଁଶି ବଜାଏ । ସନ୍ଧ୍ୟାହେଲେ ଘରକୁ ଫେରିଯାଏ । ଏମିତି ଦିନେ ପିଠା ଖାଉ ଖାଉ ଜଣେ ବୁଢ଼ୀ ଅସୁରୁଣୀ ଆସି କହିଲା, "ଆରେ ପୁଅ ! ମୋତେ ଭାରି ଭୋକ କରୁଛି, କିଛି ପିଠା ଦିଅନ୍ତୁନି, ମୁଁ ଖାଆନ୍ତି ।" ରାଧୁ ଖଣ୍ଡେ ପିଠା ସେ ବୁଢ଼ୀ ହାତକୁ ଦଉଦଉ ସେ ତାକୁ ଘୋଷାଡ଼ି ନେଇ ଅଖାରେ ପୂରେଇ ମୁଣ୍ଡେଇ ଚାଲିଲା ।

ରାଧୁ କହିଲା, "ତୁ କିଏ ମୋତେ କାହିଁକି ନଉଛୁ ?" ବୁଢ଼ୀ କହିଲା, "ମୁଁ ବୁଢ଼ୀ ଅସୁରୁଣୀ, ଆଜି ତୋତେ ରାନ୍ଧିକି ଖାଇବି ।"

ରାଧୁଆ ତ ମହାଧୂର୍ତ୍ତ । ଭାଗ୍ୟକୁ ବୁଢ଼ୀ ଅସୁରୁଣୀ ଗଲା ଧୁଆଧୁଇ ହେବାକୁ । ସେ ଅଖା ତଳେ ଥୋଇଦେଇ ପଛକୁ ଗଲା । ରାଧୁଆ ଅଖା ଭିତରୁ ଦେଖିଲା ପାଖ ବିଲରେ କିଏ ଜଣେ ହଳ କରୁଛି । ସେ ଡାକ ଛାଡ଼ିଲା, "ଦଉଡ଼ି ଆସ ହୋ ମୋତେ ରକ୍ଷା କର । ବୁଢ଼ୀ ଅସୁରୁଣୀ ମୋତେ ଏ ଅଖାରେ ବାନ୍ଧି ନଉଛି ।"

ହଳୁଆଟି ଡାକ ଶୁଣି ଦଉଡ଼ି ଆସିଲା । ତାକୁ ଅଖାରୁ ବାହାର କଲା । ଦୁଇଜଣଯାକ ଅଖା ଭିତରେ ଗୋଡ଼, ମାଟି, ପଥର, କଣ୍ଟା ସବୁ ପୂରେଇ ମୁହଁ ବାନ୍ଧି ସେଠୁ ଦଉଡ଼ି ପଳାଇଲେ ।

କିଛି ସମୟ ପରେ ବୁଢ଼ୀ ଅସୁରୁଣୀ ଧୁଆଧୋଇ ହୋଇ ଆସି ଅଖାକୁ ମୁଣ୍ଡରେ ଧରି ଚାଲିଲା । କଣ୍ଟା ସବୁ ଫୋଡ଼ି ହୋଇଗଲା । ବୁଢ଼ୀ କହିଲା, "ରହରେ ଟୋକା ! ନଖରେ ମତେ କେଞ୍ଚୁଛୁ । ଘରକୁ ଚାଲ ମସଲା ବାଟଣ ଦେଇ, ଖଟା ଦେଇ ତୋ କଅଁଳ ମାଂସକୁ ରାନ୍ଧି କରି ମନ ଶାନ୍ତିରେ ଖାଇବି ।"

ଘରକୁ ଯାଇ ଦୁଆର ମୁହଁରେ ଅଖା ଥୋଇଦେଇ ଝିଅକୁ କହିଲା, "ଝିଅଲୋ ! ୟା'କୁ ପନିକିରେ କାଟି ମସଲା ଦେଇ ରାନ୍ଧେ । ମୁଁ ଆସୁଛି ।"

ଝିଅ ଅଖା ଖୋଲିଲା ବେଳକୁ କାଠି, କୁଟା, କଣ୍ଟା ଦେଖି ମା'କୁ ସବୁ ଦେଖେଇଲା । ବୁଢ଼ୀ ଅସୁରୁଣୀ ଦାନ୍ତ କାମୁଡ଼ି ହୋଇ କହିଲା, " ଆଜି ସିନା ଖସିଗଲୁ, ଦିନେ ନା ଦିନେ ତ ହାବୁଡ଼ରେ ପଡ଼ିବୁ ।"

ଆଉ ଦିନକର କଥା । ରାଧୁ ଗଛ ଉପରେ ବସି ଖାଉଥାଏ ଫଳ । ବୁଢ଼ୀ ଅସୁରୁଣୀ ଆସି ପୁଣି ଫଳ ମାଗିଲା । ରାଧୁ ଉପରେ ଥାଇ ଗୋଟାଏ ଫଳ ପକାଇଦେଲା । "ତୁ ବୁଢ଼ୀ ଅସୁରୁଣୀ ମୋତେ ନେଇଯିବୁ । ମୁଁ ତୋ ହାତକୁ ଦେବିନାହିଁ । ତଳେ ପକେଇଛି ଗୋଟେଇ କି ନେ ।"

ବୁଢ଼ୀ ଅସୁରୁଣୀ କହିଲା, "ନାଇଁରେ ବାପ ମୁଁ ତ ଅନ୍ଧୁଣୀଟିଏ । ମୁଁ କ'ଣ ଅସୁରୁଣୀ ? ମୋତେ ତ ଦେଖାଯାଉନି । ଦବୁ ଯଦି ମୋ ହାତକୁ ଦେ । ନ ହେଲେ ମୁଁ ଯାଉଛି ।"

ରାଧୁର ମନରେ ଦୟା ଆସିଲା । ସେ ତାକୁ ଡାକି



ହାତକୁ ଫଳଟିଏ ଯେମିତି ବଢ଼େଇଛି, ଅସୁରୁଣୀ ଖପ୍ କରି ତା ହାତକୁ ମାଡ଼ିବସି ଅଖାରେ ପୂରେଇ କହିଲା, "ଆରେ ଆଜି କୁଆଡ଼େ ଯିବୁ ?"

ବୁଢ଼ୀ ଅସୁରୁଣୀ ବାଟରେ କେଉଁଠି ନ ଅଟକି ଏକା ମୁହାଁକେ ଘରେ ପହଞ୍ଚିଲା । ଝିଅ ଜିମା ଅଖା ଦେଇ କହିଲା, "ଯା'କୁ ରାନ୍ଧେ । ମୁଁ ଗାଧୋଇ କି ଆସୁଛି ।"

ଅଖା ଫିଟେଇ ଝିଅ ଦେଖିଲା ରାଧୁ ମୁଣ୍ଡରେ ଗୋଛାଏ ଚୁଟି । ତା' ମୁଣ୍ଡ ଏକଦମ୍ ଚନ୍ଦା । ଝିଅ କହିଲା, "ଆରେ ରାଧୁ ! ତୋ ମୁଣ୍ଡରେ ଏତେ ଚୁଟି କେମିତି ହେଲା ? ମୋ ମୁଣ୍ଡରେ ଟିକେ ସେମିତି ଚୁଟି କରିଦିଅନ୍ତୁନି ?"

ରାଧୁ କହିଲା, "ଆଲୋ ଅସୁରୁଣୀ ଝିଅ ! ଏ ତ ବଡ଼ ଗୁମର କଥା । ତୁ ଯଦି ତୋ ମା'ଙ୍କୁ ଏ କଥା ନ କହିବୁ, ତେବେ ସେ ଉପାୟ ମୁଁ ତୋତେ କହିବି ।" ଝିଅ ରାଣ, ନିୟମ ଦେଇ କହିଲା, "ମୁଁ ଜମା କହିବିନି, ପ୍ରଭୁଙ୍କ ରାଣ ।"

ରାଧୁ ତା କାନରେ ଚୁପ୍‌ଚୁପ୍ ହେଇ କହିଲା, "ମୋ ମା' ଢିଙ୍କିରେ ମୋ ମୁଣ୍ଡକୁ କୁଟି ଦେଇଥିଲା ଯେ ମୋର ଏତେ ବଡ଼ ବଡ଼ ଚୁଟି ହୋଇଛି ।"

ଅସୁରୁଣୀ ଝିଅ ରାଧୁକୁ ନେହୁରା ହେଇ କହିଲା, "ହେ ରାଧୁ ! ମୋ ମୁଣ୍ଡ ୨/୩ଥର କୁଟି ଦେ ଯେ ମୋର ଲମ୍ବା ଲମ୍ବା ଚୁଟି ହେଇଯିବ । ତା'ପରେ ମୁଁ ତତେ ବାଟି ତରକାରି କରିବି ମୋ ମା' ଖାଇବ । ଜଲଦି କର ମୋ ମା' ଆସିଯିବ ।"

ରାଧୁ ତ ଏଇ ସୁଯୋଗରେ ଥିଲା । ଝିଅର ମୁଣ୍ଡକୁ ଢିଙ୍କି ଖାତରେ ଥୋଇଦେଇ ୨/୪ ଚୋଟ ଦେଉଦେଉ ତାର ମୁଣ୍ଡ ଏକଦମ୍ ଛତୁ ହୋଇଗଲା ।

ରାଧୁ ଝିଅର ଲୁଗା, କାଚ, ଟକିଲି ସବୁ କିଛି ପିନ୍ଧି ଅସୁରୁଣୀ ଝିଅ ଭଳି ଦେଖାଗଲା । ରାଧୁ ଜଲଦି ଜଲଦି ବେସର ଆମ୍ବୁଲ ଦେଇ ଅସୁରୁଣୀ ଝିଅର ମୁଣ୍ଡକୁ ସୋରୁଅ କଲା । ଆଉ ତା' ମାଂସକୁ ତରକାରି କରି ଅସୁରୁଣୀ ଗାଧୋଇକି ଆସିବାରୁ ତାକୁ ବାଢ଼ିଦେଲା ।

ଅସୁରୁଣୀ ସୋରୁଅ ଖାଉଥାଏ । ଟାକରା ବି ଫୁଟଉଥାଏ । ମାଂସ ତରକାରି ଖାଇ କହିଲା, "ଆରେ ବାଃ କି ସୁଆଦିଆ ହୋଇଛି ଏ ଟୋକାର ମାଂସ ତରକାରି !" ସେତିକିବେଳେ ଗୋଟେ ବିଲେଇ ଆସି କହିଲା,

"ମିଆଁଉ ମିଆଁଉ
ନିଜ ଝିଅର ମାଂସ ତରକାରି
ନିଜେ ଖାଉ ମିଆଁଉ ମିଆଁଉ ।"

ଅସୁରୁଣୀ ରାଗିକି ଗୋଟେ କାଠଫାଳିଆ ବିଲେଇ ଉପରକୁ ପକେଇଲା ଯେ ବିଲେଇ ଏକାଥରକେ ଛଟ୍ ଛଟ୍ ହୋଇ ମରିଗଲା ।



ଏତିକିବେଳେ ରାଧୁଆର ଚୁଟି ଦେଖି ବୁଢ଼ୀ ଅସୁରୁଣୀ କହିଲା, "ହଇଲୋ ଝିଅ ! ତୋର ଏତେ ବଡ଼ ବଡ଼ ସୁନ୍ଦର ଚୁଟି କେମିତି ହେଲା ? ମୋର ଟିକେ କରି ଦିଅନ୍ତୁନି !"

ରାଧୁ ବେଶଧାରୀ ଝିଅ କହିଲା, "ମା'ଲୋ ମା' ସେ ଟୋକାକୁ ରାନ୍ଧିବା ପୂର୍ବରୁ ସେ ଢିଙ୍କିରେ ମୋ ମୁଣ୍ଡ ୨/୪ଥର କୁଟିଦେଲା ଯେ ମୋର ଏତେ ବଡ଼ ବଡ଼ ଚୁଟି ହୋଇଯାଇଛି ।"

ବୁଢ଼ୀ ଅସୁରୁଣୀ କହିଲା, "ହଉ ମୁଁ ତ ଖାଇସାରିଲିଣି, ମୋର ଟିକେ ଢିଙ୍କିରେ ମୁଣ୍ଡ କୁଟି ଦେ, ମୋ ଚୁଟି ବଡ଼ ବଡ଼ ହୋଇଯିବ ।"

ରାଧୁଆ ବୁଢ଼ୀ ଅସୁରୁଣୀ ମୁଣ୍ଡକୁ ଢିଙ୍କିରେ ରଖି କୁଟିଲା ଯେ ସେ ଏକଦମ ସଫା । ବୁଢ଼ୀ ଅସୁରୁଣୀ ଘରେ ଯେତେ ସୁନା ଗହଣା ଥିଲା ଅଖାରେ ଭର୍ତ୍ତି କରି ରାଧୁ ଗାଁ'କୁ ଫେରିଆସିଲା । ଗାଁ'ରେ ପ୍ରତ୍ୟେକ ଗରିବ ଲୋକ ବାଣ୍ଟିକୁଣ୍ଟି ସବୁ ଧନ ନେଲେ । ରାଧୁ ମା'ର ଚିକିତ୍ସା କରି ଭଲ କଲା । ସମସ୍ତେ ଭଲରେ ରହିଲେ ଏବଂ ରାଧୁକୁ ପ୍ରଶଂସା କଲେ । (ଲୋକକଥା)

*ମହିରା, କୋର୍ଭଲ, ଦେବୀଦୋଳ, ଜଗତସିଂହପୁର ସାହିତ୍ୟ ପରିଷଦ, ଜଗତସିଂହପୁର*

---

*ଶବ୍ଦ ସନ୍ଧାନର ଉତ୍ତର- ପ୍ରାଣ*



# ଚୀନ ଦେଶରେ ଗୀତା

ଅର୍ଜୁନ ଓ ଶ୍ରୀକୃଷ୍ଣଙ୍କୁ କଥୋପକଥନକୁ ନେଇ ଗୀତା । ଏହା ମହାଭାରତର ଏକ ଅଂଶବିଶେଷ । ଏବେ ବିଭିନ୍ନ ଦେଶରେ ଗୀତାର ଚର୍ଚ୍ଚା ହେଉଛି । ଚୀନ ମଧ୍ୟ ଏଥିରୁ ବାଦ୍ ଯାଇନି । ଇସ୍‌କନ ସଂସ୍ଥା ଏଥିପାଇଁ ବିଶେଷ କ୍ରିୟାଶୀଳ । ବେଜିଂର କେତେକ ଭାରତୀୟ ଶ୍ରଦ୍ଧାଳୁଙ୍କୁ ନେଇ ଇସ୍‌କନ ହିନ୍ଦୁ ଶାସ୍ତ୍ର ଆଲୋଚନା ଚକ୍ରଟେ ଆରମ୍ଭ କଲେ । ଏଥିରେ ବହୁତ ଚାଇନିଜ୍ ଯୋଗ ଦେଇଥିଲେ । ଚାଇନା ଭାଷାରେ ଅନୁଦିତ ଗୀତା କିଣିବା ପାଇଁ ସେ ଦେଶର ଆଗ୍ରହୀ ପାଠକ-ପାଠିକା ଲମ୍ବା ଧାଡ଼ିରେ ଠିଆ ହେଇଥିଲେ । ଚାଇନିଜ୍ ପ୍ରକାଶକମାନେ ଗୀତାର ଅନୁବାଦ ପ୍ରକାଶ କରିଛନ୍ତି । ଜେଜାଂ ବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗ ଏହାର ସଂପାଦନା କରିଛନ୍ତି । ପ୍ରକାଶଥାଉ କି, ଚାଇନା ଏକ କମ୍ୟୁନିଷ୍ଟ ଦେଶ । ସେ ଦେଶରେ ଧର୍ମ ବିଚାର ହୁଏନି; ଅଥଚ ଏବେ ଚୈନିକମାନେ ଆଧାତ୍ମିକତା ନେଇ ଚିନ୍ତା କରିବା ଏକ ବିଚିତ୍ର ସମ୍ବାଦ ।

**ଡ. ଶୁଭେନ୍ଦ୍ରମୋହନ ଶ୍ରୀଚନ୍ଦନ ସିଂହ,**
*ଯଦୁମଣିପାଟଣା, ରେଢ଼ାଖୋଲ, ସମ୍ବଲପୁର-୭୬୮ ୧୦୬*

# ପକ୍ଷିଆ

ଡକ୍ଟର କୃତ୍ତିବାସ ନାୟକ

ଚାଷୀ ମୂଲିଆର ସାଥୀ ମୁଁ
ମୋର ନାମ ପକ୍ଷିଆ,
ଖରା ବରଷାରେ ସାହା ମୁଁ
ରୂପ ଏକଫାଳିଆ ।
ତାଳ ପତରରେ ଗଢ଼ା ମୋ
ଲମ୍ବା ଡେଙ୍ଗା ଶରୀର,
ଚାଷୀର ଦେହକୁ ଲାଗେନା
ଅଣ୍ଡା ଶୀତ କାକର ।



ଘୋଡ଼େଇ ରଖେ ମୁଁ ଚାଷୀର
ପାଦଠାରୁ ମଥାକୁ,
ମଥାରେ ଝୁଲିକି ଥାଏ ମୁଁ
ଲାଞ୍ଜ ଥାଏ ତଳକୁ ।
ଗରିବର ଦେଶୀ ଛତା ମୁଁ
ହାଟ ବଜାରେ ମିଳେ,
ଧାନ କଟା, ରୁଆ ବେଳରେ
ମୁହିଁ ଆଗୁଆ ଚାଲେ ।
ଛତା ଉଡ଼ିଯାଏ ଝଡ଼ରେ
ଭାଙ୍ଗିଯାଏ ତା' କାଠି,
ପବନ ବରଷା ଭିଜାଏ
ଆଗପଛରୁ ଛାଟି ।
ମାଆ ପରି ରଖେ କୋଳରେ
ମୁହଁ କାନି ଘୋଡ଼େଇ,
ଝଡ଼ କି ବତାଶ ପବନ
ପାରେନାହିଁ ଉଡ଼େଇ ।

*ସି.ଡି.ଏ., ୧୪୬୩ ସେକ୍ଟର-୧୦, କଟକ-୭୫୩୦୧୪*



### 'ଲେଖନୀର ପାଠଶାଳା'ର ଉତ୍ତର

୩ । ଅରୁଆ – ଉଷୁନା; କଠିନ – କୋମଳ; ଚେମଡ଼ା – ମସକା; ଲୁଣିଆ – ଅଲଣା; ଶାରୀରିକ – ମାନସିକ । ୪ । କରତ, ରକତ, ତରକ ୫ । ହର, ସିଂହ, ନବ, ବେତ, ବାର । ୬ । ଦଳ, ବର୍ଣ୍ଣ, ମାଳ । ୭ । ଗୋପବନ୍ଧୁଙ୍କ 'ବନ୍ଦୀର ଆତ୍ମକଥା'ରୁ ଏହା ଗୃହୀତ । ପ୍ରଥମ ଧାଡ଼ିଟି ହେଲା– 'ମିଶୁ ମୋର ଦେହ ଏ ଦେଶ ମାଟିରେ ।' ୮ । ଚକି, ୯ । ଅଙ୍ଗାର ପାଉଁଶ ।



## ଜନଶ୍ରୁତି ଆମର ଢଗଢ଼ମାଳି

ଶ୍ରୀ ଅନ୍ତର୍ଯ୍ୟାମୀ ଲେଙ୍କା

*ଭେକ ଥିଲେ ଭିକ ମିଳେ*

ଏହି ଢଗଟିର ଆକ୍ଷରିକ ଅର୍ଥ ହେଲା– ଭିକ ମାଗୁଥିବା ଲୋକଟିର ସେହି ଧନ୍ଦା ପାଇଁ ସେହି ପ୍ରକାର ଭେକ ବା ପୋଷାକ ନିହାତି ଦରକାର । ଆମେ ଯାହା ଦେଖୁ– ସାଧାରଣତଃ ଭିକାରୀମାନେ ଛିଣ୍ଡା, ମଳିନ ଲୁଗା, ଗାମୁଛା ବା କେତେବେଳେ କେହି ସେହିପରି ସାତଛିଣ୍ଡା ଜାମା ଖଣ୍ଡିଏ ପିନ୍ଧିଥାଏ । ଅନେକ ସେମାନଙ୍କର ହାତ ଆଙ୍ଗୁଠି ଓ ପାଦ ତଥା ଆଙ୍ଗୁଳିମାନଙ୍କରେ ଛିଣ୍ଡାକନାମାନ ଗୁଡ଼ାଇ ବିଶେଷ ବେମାରିରେ ପୀଡ଼ିତ ଥିବାର ଦର୍ଶାଇ ଥଆନ୍ତି । ଏହାଦ୍ୱାରା ସେମାନେ ସର୍ବସାଧାରଣଙ୍କର ସହାନୁଭୂତି ପାଇବା ପାଇଁ ଚେଷ୍ଟା କରିଥାଆନ୍ତି ।

ଏହା ସତ୍ୟ ଯେ ସମସ୍ତେ ଭିକାରୀମାନଙ୍କର ଏହିପରି ବାହ୍ୟ ଚେହେରା ଦେଖି ଦୁଃଖିତ ହୋଇ ଯାହା କିଛି ସେମାନଙ୍କର ପାତ୍ରରେ ପକାଇ ଦେଇଥାଆନ୍ତି । ସେମାନଙ୍କର ସେହି ପ୍ରକାର ଭେକ ନ ଥିଲେ କେହି କିଛି ଦିଅନ୍ତେ ନାହିଁ । ଆମେ ନିଶ୍ଚୟ କରି ଏହା କହିବୁ ଯେ ଯେତେ ଲୋକ ଭିକ ମାଗୁଛନ୍ତି, ସମସ୍ତେ ତାହା ପାଇବାର ହକଦାର ନୁହନ୍ତି । ଏ ଦେଶରେ କେତେକ ରାଜ୍ୟର ସରକାର ଏହାକୁ ନିଷିଦ୍ଧ କରିଦେଇ ଭିକାରୀମାନଙ୍କୁ ଥଇଥାନ କରିଦେଇଛନ୍ତି ।

ଭିକ୍ଷାବୃତ୍ତି ଏକ ସରଳ ଓ ସୁବିଧା ଉପାୟ ହୋଇଥିବାରୁ ବହୁ ଲୋକ ଏହାକୁ ନିଜର ପୂର୍ଣ୍ଣ ଆୟର ପନ୍ଥା ବୋଲି ଧରି ନେଇଛନ୍ତି । ଆମର ଓଡ଼ିଶା ସରକାର ଏହାକୁ ନିଷିଦ୍ଧ କରିନାହାନ୍ତି । କିପରି ଜଣେ ସୁସ୍ଥ ଯୁବକ ଭିକ୍ଷାବୃତ୍ତିକୁ ସବୁଦିନେ ନିଜର ମୁଖ୍ୟଧନ୍ଦା ବ୍ୟତୀତ ଏହାକୁ ପେଷା ଭାବେ ଗ୍ରହଣ କରି ନେଇଥିଲା, ତାହାର କାହାଣୀଟିଏ ଅଛି–

୧୯୪୮-୪୯ ମସିହା କଥା । ମୁଁ ଓ ମୋର ଭଣଜା ପ୍ରଭୁଚରଣ ରେଭେନ୍ସା କଲେଜରେ ପଢୁଥିବା ସମୟରେ ରାଣୀହାଟ ପୋଲ ପାଖରେ ଥିବା ପାରାଡାଇଜ୍ ହୋଟେଲ ନାମକ ଏକ ପୁରୁଣା ଦୋ'ମହଲା କୋଠାରେ ରହୁଥିଲୁ । ଆମ ସାଥିରେ ଆଉ କେତେକ ଛାତ୍ର ମଧ୍ୟ ରହୁଥିଲେ । ସେହି କୋଠାର କେନାଲ ପାଖ କଡ଼କୁ ଲାଗି ଚାଳଘର ଖଣ୍ଡେ କରି ଗୋଟିଏ ଛୋଟ ପରିବାର ରହୁଥିଲେ । ସେ ଲୋକଟି ସେଠାରେ ଗୋଟିଏ ଶାଳଘର କରି କଟୁରୀ, ଦା, କୁରାଢ଼ି ଆଦି ତିଆରି କରେ ଓ ପଜାପଜି କାମ ପ୍ରତିଦିନ କରିଥାଏ । ମଦ ପିଇ ସ୍ତ୍ରୀକୁ ପିଟାପିଟି କରେ । ସ୍ତ୍ରୀଲୋକଟିର କାନ୍ଦଣା ଓ ପାଟିତୁଣ୍ଡ ଶୁଣି ଆମ୍ଭେମାନେ ମଝିରେ ମଝିରେ ଯାଇ ଲୋକଟିକୁ ଧମକଚମକ ଦେଇ କିଛିଟା ସମାଧାନ କରୁ । ଏହିପରି ଭାବେ ଆମେ ବହୁବାର ସେଠାକୁ ଯାଉଥିବାରୁ ଲୋକଟିକୁ ଭଲରକମର ଚିହ୍ନି ନେଇଥାଉ ।

ଦିନେ ସନ୍ଧ୍ୟାରେ ଆଠଟା ସମୟରେ ଆମେ କେତେଜଣ ମିଶି କଲେଜ ଛକ ପାଖରୁ ଆମ ହୋଟେଲକୁ ଫେରୁଥାଉ । ବାଟରେ ଆମ ସାମନାରେ ଜଣେ ବୁଢ଼ା ଭିକାରୀ ସାମାନ୍ୟ ଛୋଟେଇ ଛୋଟେଇ କେତେକ ପଇସା ଥିବା ଏକ ଟିଣ ଡବା ଝମ୍ କରି ବଜାଇଦେଇ, 'ଗୋଟିଏ ପଇସା ବାବୁ' କହି, ଆମମାନଙ୍କୁ ଚାହିଁଦେଇ ବୁଲିପଡ଼ି ପଳାଇଯାଉଥିଲା । ମାତ୍ର ତାର ଏହି ଅସ୍ୱାଭାବିକ ଢଙ୍ଗ

ଦେଖି ଜଣେ ତାର ସାମନାରେ ଠିଆ ହୋଇଗଲା ଏବଂ ସେ ଧରା ପଡ଼ିଗଲା । ସେ ଥିଲା ଆମର ପରିଚିତ ଲୁହା କାମ କରୁଥିବା କମାର 'ଭାଗୁ' । କି ସୁନ୍ଦର ରୂପସଜ୍ଜା ! କୌଣସି ଥିଏଟର ଏପରିକି ସିନେମାମାନଙ୍କରେ ରୂପସଜ୍ଜା କଳାକୁ ପେଷା କରିଥିବା କଳାକାର ଯୁବକ ଭାଗୁର ବୃଦ୍ଧ ବେଶର କଳାଚାତୁରୀରେ ହାର୍ ମାନିବେ ।

କେତେ ବର୍ଷ ତଳେ ଏକ ଖବରକାଗଜରେ ପ୍ରକାଶ ପାଇଥିଲା ଏକ ଭିନ୍ନ ଧରଣର କୌତୂହଳୋଦ୍ଦୀପକ କାହାଣୀ– ଜଣେ ଉଚ୍ଚଶିକ୍ଷିତ ଯୁବକ ବେକାର ଥିବାରୁ ମନର ଅବସ୍ଥା ଭଲ ନ ଥାଏ । ଚାକିରି ପାଇଁ ଘୂରି ବୁଲୁ ବୁଲୁ କଟକ ରେଲ୍‌ୱେ ଷ୍ଟେସନ୍‌ରେ ଥିବା ସିମେଣ୍ଟ ବେଞ୍ଚ୍ ଉପରେ ବସିଥିଲା । କେତେ ସମୟ ବସିଲା ପରେ ଜଣେ ଲୋକ ତାଙ୍କ ପାଖରେ ବସି ଗପସପ ଜମାଇଦେଲା । କଥାବାର୍ତ୍ତାରେ ସେହି ଯୁବକଟି ବେକାର ଅଛି ଏବଂ କେତେ ଦିନ ଧରି ଚାରିଆଡ଼େ ବୁଲିଲେ ମଧ୍ୟ କୌଣସି ଫଳ ମିଳିନାହିଁ ବୋଲି ପାଖରେ ବସିଥିବା ଲୋକଟିକୁ କହିଲା । ଲୋକଟି ଯୁବକକୁ ବୁଝାଇବାକୁ ଯାଇ କହିଲା ଯେ ଯଦି ସେ ତା ସାଥିରେ ଯାଜପୁର ରୋଡ୍ ଯାଆନ୍ତେ, ତେବେ ସେଠାରେ ତାଙ୍କ ଜଣାଶୁଣା ଥିବା କେତେକ କମ୍ପାନୀ ଓ ବଡ଼ ବଡ଼ ବ୍ୟବସାୟ ପ୍ରତିଷ୍ଠାନରେ ନିଶ୍ଚୟ ଚାକିରି କରାଇ ଦେଇପାରନ୍ତେ ।

କଥାର ଅଛି 'ବୁଡ଼ିଯିବା ଲୋକର କୁଟାଖିଅକୁ ଆଶ୍ରା' । ଯୁବକଟି ସଙ୍ଗେ ସଙ୍ଗେ ରାଜି ହୋଇଗଲା । ଲୋକଟି କହିଲା, "ଏବେ ଗାଡ଼ି ଚାଲିଆସିବ, ଶୀଘ୍ର ଯାଇ ଗୋଟିଏ ଟିକେଟ୍ ନେଇ ଆସ । ଯୁବକଟି ତା ପାଖରେ ମାତ୍ର ପାଞ୍ଚଟି ଟଙ୍କାରୁ ଅଧିକ ନ ଥିବାରୁ, ଟିକେଟ୍ କରିବାର ସାମର୍ଥ୍ୟ ନ ଥିବା ପ୍ରକାଶ କରିବାରୁ ବ୍ୟକ୍ତିଜଣଙ୍କ ତାକୁ ଗୋଟିଏ ଉପାୟ ବତାଇଦେଲା, "ମୋର ଏହି ଛିଣ୍ଡା ଲୁଙ୍ଗି ଓ ଗାମୁଛା ପିନ୍ଧିପକାଅ । ତୁମର ପୋଷାକପତ୍ର, ଜୋତା ଇତ୍ୟାଦି ବ୍ୟାଗରେ ରଖିଦିଅ । ମୁଣ୍ଡର ବାଳକୁ ଅଲରା କରିଦେଇ ଆଗକୁ ଝୁଲାଇଦିଅ । ମନେକର ବର୍ତ୍ତମାନ ତୁମେ ଗୋଟିଏ ଭିକାରୀ ହୋଇଗଲ । ଆମେ ଟ୍ରେନ୍‌ରେ ଏକାଠି ବସିଥିବା ଟି.ଟି.ଆଇ. ଆସିବା ଜାଣିପାରିଲେ ତୁମେ ଉଠିଯାଇ 'ବାବୁ ଗୋଟିଏ ପଇସା ଦିଅ' ଇତ୍ୟାଦି କହି ମାଗି ଚାଲିବ । ଟି.ଟି.ଆଇ. ପଳେଇଲେ ମୋ ପାଖକୁ ଚାଲିଆସିବ ।



ବାସ୍ତବ ଘଟଣା ମଧ୍ୟ ସେହିପରି ଘଟିଲା । ଟି.ଟି.ଆଇ. ସେହି ଡବାକୁ ପ୍ରବେଶ କଲା ମାତ୍ରେ ସେହି ଲୋକଟି ଯୁବକକୁ ପେଲି ଉଠାଇଦେଲା । ଯୁବକଟି ସୁଚାରୁରୂପେ ଭିକାରୀର ଅଭିନୟ କରି ଚାଲିଲେ । ତାଙ୍କର ଭେକ, ଢଙ୍ଗ ଦେଖି ଟି.ଟି.ଆଇ. ତଥା ଯାତ୍ରୀମାନେ କୌଣସି ସନ୍ଦେହ ପ୍ରକାଶ କରିବାର କାରଣ ନ ଥିଲା । ଅତଏବ ଯୁବକଟି ଟି.ଟି.ଆଇ.ଙ୍କର ଗତିବିଧି ଲକ୍ଷ୍ୟ ରଖି ପୂର୍ବର ଯଥାସ୍ଥାନକୁ ଫେରିଆସିଲେ; ମାତ୍ର ଦେଖିଲେ ସେ ଲୋକଟି ସେ ସ୍ଥାନରେ ନାହିଁ । ତାଙ୍କର ଡବା ଜାଣିବାରେ କିଛି ଭ୍ରମ ହୋଇପାରେ । ତେବେ ଯାଜପୁର ରୋଡରେ ନିଶ୍ଚୟ ଭେଟ ହେବ, ଏହି ଧାରଣା ନେଇ ବସି ରହିଲେ । ଷ୍ଟେସନରେ ଗାଡ଼ି ପହଞ୍ଚିଲା । ସେ ତରତର ହୋଇ ଓହ୍ଲାଇଗଲେ । ଦୌଡ଼ି ଦୌଡ଼ି କରି ସାରା ଷ୍ଟେସନ ଖୋଜିଗଲେ । ମାତ୍ର ଶେଷରେ ନିରାଶ ହୋଇ ପୁଲିସ୍‌ର ଆଶ୍ରୟ ନେଲେ । ଖଣ୍ଡେ ଛିଣ୍ଡା ଲୁଗା, ଛିଣ୍ଡା ଗାମୁଛା

ପରିହିତ ଜଣେ ଉଚ୍ଚଶିକ୍ଷିତ ଯୁବକର ଏପରି ଅବସ୍ଥା ଦେଖି ପୁଲିସ୍ କର୍ମଚାରୀ ତଥା ରେଳ ବିଭାଗ କର୍ମଚାରୀମାନେ ସେହି ଠକ ବ୍ୟକ୍ତିଟିକୁ ଧରିବାର ପ୍ରୟାସ କରି ବିଫଳ ହେଲେ । ତେବେ ସେମାନେ ଯୁବକଟିକୁ କିଛି ଆର୍ଥିକ ସାହାଯ୍ୟ ଦେଇ କଟକଫେରନ୍ତା ଗାଡ଼ିରେ ବସାଇଦେଲେ ।

ଆମର ଢଗର ଯଥାର୍ଥ ମର୍ମ ଅନୁସାରେ ପ୍ରତିକ୍ଷେତ୍ରରେ ଭେକ ବା ପୋଷାକର ଗୁରୁତ୍ୱ ରହିଛି । ଏପରି ଦେଖାଯାଇଛି ଡାକୁମାନେ ପୁଲିସ୍ ପୋଷାକ ପିନ୍ଧି ସୁବିଧାରେ ଡକାୟତି କରିଥାନ୍ତି । ଯଦି କେହି ଫୁଲ୍‌ପ୍ୟାଣ୍ଟ, ଜୋତା ଇତ୍ୟାଦି ପିନ୍ଧି ପୂଜାପାଠ କରିବାର ସାହସ କରେ, ତାହା କିପରି ସମସ୍ୟା ସୃଷ୍ଟି କରିବ, ଅନୁମାନ କରାଯାଇପାରେ ।

କଥାରେ ଅଛି– ଭେକ ନ ଥିଲେ ଭିକ ମିଳେନାହିଁ । ତେଣୁ ପେଟପାଟଣା ପାଇଁ ଭିକ୍ଷୁକମାନେ ନାନାପ୍ରକାର ଫନ୍ଦିଫିକର କରିଥାନ୍ତି । ଏଥିପାଇଁ କିଏ ଅନ୍ଧ ତ ଆଉ କିଏ ବିକଳାଙ୍ଗ ହେବା ଅଭିନୟ କରିଥାଏ । ମାତ୍ର ଅନେକ ସମୟରେ ଘଟଣାଚକ୍ରରେ ଧରାପଡ଼ିଯିବାର ମଧ୍ୟ ନଜିର ଅଛି ।

ସେହିପରି ଏକ ଘଟଣା । ପଦ୍ମପୁର ସହରରେ ଦୁଇଜଣ ସାଧୁବେଶରେ ଭିକ୍ଷା ମାଗୁଥିଲେ । ତନ୍ମଧ୍ୟରୁ ଜଣଙ୍କର ନକଲି ଦାଢ଼ି ଖୋଲିଯାଇଥିଲା । ଏହା କେତେକଙ୍କ ନଜରରେ ପଡ଼ିଲା । ସଙ୍ଗେ ସଙ୍ଗେ ସେମାନଙ୍କୁ କେତେକ ଲୋକ ଗୋଡ଼ାଇ ଧରିନେଇ ଉତ୍ତମ



ମଧ୍ୟମ ଦେଇଥିବା ଜଣାପଡ଼ିଛି । ପେଟ ପାଇଁ ନାଟ କରୁଥିବା ଉଭୟଙ୍କୁ ଏହି ପ୍ରକାର ଅଭିନୟ ବେଶ୍ ମହଙ୍ଗା ପଡ଼ିଥିଲା ।

ଜଣେ ରାଜପୁତ୍ର ନିଜର ଭେକ ଯୋଗୁ ସେହିପରି ଅପମାନିତ ହୋଇଥିଲେ । କୌଣସି ଏକ ବିଶେଷ କାମରେ ରାଜା ତାଙ୍କ ଯୁବକପୁତ୍ରଙ୍କୁ ରାଜ୍ୟରୁ ବାହାର କରିଦେଇଥିଲେ । ଅନେକ ଦିନ ଧରି ଏଣେତେଣେ ଘୂରିବୁଲିବା ଦ୍ୱାରା ରାଜକୁମାରଙ୍କର ପିନ୍ଧିଥିବା ଏକମାତ୍ର ରାଜକୀୟ ପୋଷାକ ଅତ୍ୟନ୍ତ ମଇଳା ହୋଇଯାଇଥିଲା । ଏହିପରି ଭାବେ ସେ ଦୈବାତ୍ ତାଙ୍କ ମାମୁଘର ରାଜ୍ୟରେ ପହଞ୍ଚିଯାଇଥିଲେ । ମାମୁଙ୍କ ସହ ଦେଖା କରିବାକୁ ଟିକିଏ ତାଙ୍କର ଇଚ୍ଛା ହେଲା । ସେ ଦରବାରକୁ ଯାଇ ନିଜେ ରାଜାଙ୍କ ଭଣଜା ବୋଲି ପରିଚୟ ଦେଲେ । ତାଙ୍କର ମଇଳା ପୋଷାକ ଦେଖି ତାଙ୍କର ମାମୁ ତାଙ୍କୁ ଚିହ୍ନି ତ ପାରିଲେ ନାହିଁ, ଓଲଟି ତାଙ୍କ ଦେହରକ୍ଷୀକୁ କହିଲେ ପାଗଳ ଯୁବକଟିକୁ ନେଇ ବାହାରେ ଛାଡ଼ି ଆସିବା ପାଇଁ ।

ରାଜକୁମାର ଦୁଃଖିତ ହେଲେ ଓ ହଠାତ୍ ତାଙ୍କର ଜନମୁଖରୁ ଶୁଣିଥିବା ଢଗଟି ମନେପଡ଼ିଗଲା ।– 'ଭେକ ଥିଲେ ଭିକ ମିଳେ' । ସେ ଜାଣିପାରିଲେ ଯେ ତାଙ୍କର ଶୁଣିଥିବା ଢଗକୁ ତୁଚ୍ଛ ମନେକରି ସେଥିରେ ଥିବା ଉପଦେଶ ସମ୍ପର୍କରେ ସଚେତନ ନ ରହିବାର ଫଳ । ତା'ପରେ ସେ ଢଗର ସତ୍ୟତା ପରୀକ୍ଷା କରିବା ପାଇଁ ତାଙ୍କ ପାଖରେ ଥିବା କିଛି ମୁଦ୍ରା ବିନିମୟରେ ନୂତନ ପୋଷାକ ଖର୍ଦି କଲେ ଓ ମୂଲ୍ୟବାନ କିଛି ଉପହାର ମଧ୍ଯ କିଣିଲେ । ନୂତନ ପୋଷାକ କିଣି ଉପହାର ସହ ସେ ଯେତେବେଳେ ତାଙ୍କ ମାମୁଘରକୁ ଗଲେ, ତାଙ୍କ ମାମୁ ତାଙ୍କୁ ଦେଖି ସିଂହାସନରୁ ଉଠିଆସି ତାଙ୍କୁ ପାଛୋଟି ନେଲେ । କୁମାର ସେଠାରେ ଆଦରଯତ୍ନ ସହ କିଛି ଦିନ ରହି ଅନ୍ୟତ୍ର ଚାଲିଗଲେ ।

# ଭଲଲାଗେ ମୋତେ

ଶ୍ରୀମତୀ ବସନ୍ତ ମିଶ୍ର



ଭଲଲାଗେ ମୋତେ ମାଆଙ୍କର ଗେଲ
ବାପାଙ୍କ ମିଠା ଆକଟ
ଜେଜେଙ୍କ ନିକଟେ ରୁଷା ଅଭିମାନ
ଜେଜେମା' ପାଶେ ଅଝଟ ।୧।

କଣ୍ଢେଇ କନିଆ, ବର ଭଲଲାଗେ
ମିଛ ମିଛ ବାହାଘର
ଶଢ଼େଇରେ ଡାଲି- ଭାତ ତରକାରି
ଲାଗଇ ମଧୁରତର ।୨।
ଭଲଲାଗେ ପୁଣି କଙ୍କି ପ୍ରଜାପତି
ପଛେ ପଛେ ଗୋଡ଼ାଇବା
ସାଙ୍ଗସାଥୀ ମେଳେ କ୍ଷେତ ଓ ପାଟରେ
ନାଲି ଗୁଡ଼ି ଉଡ଼ାଇବା ।୩।

ଶୀତ ସକାଳରେ ନାଲିଆ ମୁରୁଜ
କିରଣ ଲାଗଇ ଭଲ
କୁନି ବାଛୁରୀର ଲାଞ୍ଜ ଟାଣି ତାକୁ
କରିବାକୁ କଲବଲ ।୪।

ଝିପି ଝିପି ମେଘେ ଗାଁ ଦାଣ୍ଡେ ବୁଲି
ନାଚିବାକୁ ମଜା ଲାଗେ
ଚଢ଼େଇ ବସାରୁ ଛୁଆଟିଏ ଆଣି
ପାଳିବା ବାସନା ଜାଗେ ।୫।

ଭଲଲାଗେ ବାଡ଼ି ବଗିଚା ଭିତରେ
ବଣ ଭୋଜି କରିବାକୁ
ଖରାବେଳେ ବଣ ବୁଦା ବୁଲିବୁଲି
କୋଳି ତୋଳି ଖାଇବାକୁ ।୬।

ଭଲଲାଗେ ପୁଣି ପଢ଼ା ବେଳେ ପଢ଼ି
ଖେଳ ବେଳେ ଖେଳିବାକୁ
ଜୀବନ ଦେଇକି ଜନମ ଭୂଇଁର
ଯଶ ମାନ ରଖିବାକୁ ।୭।



---

ଅତଏବ୍ ଆମର ପୂର୍ବଜମାନେ ଢଗ ଛଳରେ ଯେଉଁ ଉପଦେଶମାନ ଆମ୍ଭମାନଙ୍କ ପାଖରେ ରଖିଯାଇଛନ୍ତି, ସେ ସବୁକୁ ଠିକଣା ଭାବରେ ପାଳନ କଲେ ଉପକାର ତ ନିଶ୍ଚୟ ହେବ ଏବଂ ତା ସହିତ ଆନନ୍ଦ ମଧ୍ୟ ମିଳିବ ।

*ରାଜାବଗିଚା, କଟକ- ୯*

# ରହିମ୍ ଚାଚା

ଚିକୁନ୍ ପଣ୍ଡା

ମୁର୍ସିଦାପୁରରେ ଛୋଟ ଗାଁଟିଏ । ସେଇଠି ରହନ୍ତି ରହିମ୍ ଚାଚାର ପରିବାର । ପରିବାର କହିଲେ– ପୁଅ ମୁସାକ୍ ଅଲ୍ଲୀ, ବୋହୂ ପରବିନ୍ ବିବି ଆଉ ସ୍ତ୍ରୀ ଜାନି । ପରିବାରର ସମସ୍ତ ବୋଝ ଚାଚା ରହିମ୍ଙ୍କ ଉପରେ । କାରଣ ତାଙ୍କର ପୁଅ ମୁସ୍ତାକ୍ ଅଲ୍ଲୀ ଜନ୍ମରୁ ଭିନ୍ନକ୍ଷମ ଯୁବକଟିଏ ।

ଗାଁ ନିକଟରେ ରହିମ୍ ଚାଚାଙ୍କ ତେଜରାତି ଦୋକାନଟିଏ ଅଛି । ସେଥିରୁ ଯାହା ରୋଜଗାର ହୁଏ, ଚାରିଜଣ ଆରାମରେ ଚଳିଯା'ନ୍ତି । ମାତ୍ର ଭାଗ୍ୟ ସବୁବେଳେ ସାଥୀ ଦେଇ ନ ଥାଏ । ରହିମ୍ ଚାଚାଙ୍କର ଭାଗ୍ୟରେ ମଧ୍ୟ ଅମା ଅନ୍ଧକାର ଘୋଟି ଆସିଲା । ଅନାବାଦୀ ଜାଗାରେ ଦୋକାନଟି ଥିବାରୁ ଭାଙ୍ଗିବାକୁ ସରକାର ନିର୍ଦ୍ଦେଶ ଦେଲେ । ରହିମ୍ ଚାଚାଙ୍କ ମୁଣ୍ଡରେ ଚଡ଼କ ପଡ଼ିଲା ପରି ମନେହେଲା । ସେ ପୂରାପୂରି ଭାଙ୍ଗିପଡ଼ିଲେ । ବୁଢ଼ା ବୟସରେ ଏତେ ବଡ଼ ଘଟଣାଟା ତାଙ୍କ ହୃଦୟଟାକୁ ଦୋହଲାଇ ଦେଲା । ରହିମ୍ ଚାଚାଙ୍କର ବୟସ ପାଖାପାଖି ଅଶି ହେବ । ଚମ ଧୁଡୁଧୁଡୁ ହୋଇଗଲାଣି । ଆଖି କୋଟରାଗତ ହୋଇଗଲାଣି । ବୁଢ଼ା ବୟସରେ କେହି ବି ସାହାରା ନାହାନ୍ତି । ତଥାପି ରହିମ୍ ଚାଚା ମନ ଦୃଢ଼ କଲେ । କାରଣ ତାଙ୍କୁ ବଞ୍ଚିବାକୁ ହେବ ନିଜ ପରିବାର ପାଇଁ ।



ଏତେ ବୁଢ଼ା ବୟସରେ କାମ ମିଳିବା ବି କଷ୍ଟ; ତଥାପି ସେ ହାର୍ ମାନିଲେ ନାହିଁ । ସେ ସ୍ଥିର କଲେ ଟ୍ରଲି ଚଲେଇବେ । କୌଣସି ଟ୍ରଲି ମାଲିକ ରାଜି ହେଲେନି ଏତେ ବୁଢ଼ାଲୋକକୁ ଟ୍ରଲି ଦେବାକୁ । ରହିମ୍‌ଚାଚା ମନ ଦୁଃଖରେ ଘରକୁ ଫେରିଆସିଲେ ।

ଘରକୁ ଆସି ଦେଖିଲେ, ଘରେ ଖାଇବା ପାଇଁ କିଛି ନାହିଁ ।

ସେଦିନ ସମସ୍ତଙ୍କୁ ଭୋକରେ ଶୋଇବାକୁ ପଡ଼ିଲା । ରହିମ୍ ଚାଚାଙ୍କର ସ୍ତ୍ରୀ ଜାନି ଘରର ଏଭଳି ଅବସ୍ଥା ଦେଖି ପର ଘରେ ବାସନ ମାଜିବା ଆରମ୍ଭ କଲେ । ବହୁତ କଷ୍ଟରେ ରୋଜଗାର କରି ଓଳିଏ ଖାଇଲେ ଓଳିଏ ଓପାସ । ଏହିଭଳି ସ୍ଥିତିରେ ରହିମ୍‌ଚାଚାର ପରିବାର ବଞ୍ଚିଲେ ।

କଥାରେ ଅଛି, 'ଦୁଃଖ ଆସିଲେ ଭାଇଭଗାରିଙ୍କୁ ସାଥିରେ ଧରି ଆସେ' । ଇତିମଧ୍ୟରେ ରହିମ୍‌ର ସ୍ତ୍ରୀ ଜାନି ଭୟାନକ ଟାଇଫଏଡ୍ ଜ୍ୱରରେ ଆକ୍ରାନ୍ତ ହେଲା । ଟଙ୍କା ଅଭାବରୁ ଔଷଧ ଟିକିଏ ମଧ୍ୟ କିଣି ହେଲାନାହିଁ । ଭୋକରେ ଆଉଟୁପାଉଟୁ ହେଲେ ମଧ୍ୟ ପାଟିରେ ଦାନା ଟିକେ ମିଳୁ ନ ଥାଏ । ଏମିତି ପଡ଼ି ପଡ଼ି ଶେଷରେ ତା'ର ପ୍ରାଣବାୟୁ ଉଡ଼ିଗଲା ।

ସ୍ତ୍ରୀର ମୃତ୍ୟୁରେ ଦୁଃଖରେ ରହିମ୍ ଚାଚା ଆହୁରି ଭାଙ୍ଗି ପଡ଼ିଲେ । ଏପଟେ ଭୋକର ଜ୍ୱାଳା ସହି ନ ପାରି ବୋହୂ ସବୁଦିନ ପାଇଁ ବାପ ଘରକୁ ଚାଲିଗଲେ ।

ରହିମ୍ ଚାଚା କ'ଣ କରିବେ, କ'ଣ ନାଇଁ ତାଙ୍କୁ ଚାରିଦିଗ ଅନ୍ଧକାର ଦିଶିଲା । ସେ ମନେ ମନେ ଭାବିଲେ–ଏତେ ବଡ଼ ଦୁନିଆରେ ମୋ' ପରେ ମୋ ଅନ୍ଧ ପୁଅକୁ କିଏ ସାହାରା ଦେବ ?

ରହିମ୍ ଚାଚା ମୂଲ ଲାଗିବା ପାଇଁ ଚିନ୍ତା କଲେ । ଶେଷରେ ତାଙ୍କୁ କାମ ମିଳିଲା । ସ୍ଥିର ହେଲା ଯେ ରହିମ୍ ଚାଚା ମୂଲ ଲାଗିବେ; କିନ୍ତୁ କମ୍ ମଜୁରି ନେବେ । ଘରର ମାଲିକ ଏଭଳି ସର୍ତ୍ତ ରଖିଥିଲେ । ତଥାପି ରହିମ୍ ଚାଚା ଅରାଜି ହୋଇ ନ ଥିଲେ ।

ରହିମ୍ ଚାଚା ମୂଲ ଲାଗି ଘରକୁ ଫେରୁଥିବାବେଳେ ତାଙ୍କର ଜଣେ ସନ୍ନ୍ୟାସୀଙ୍କ ସହ ଭେଟ ହେଲା । ରହିମ୍ ଚାଚା ତାଙ୍କ ଜୀବନରେ ଥିବା ପ୍ରତ୍ୟେକଟି ସମସ୍ୟା କହିଲେ ଓ ସେ କାହିଁକି ଏତେ କଷ୍ଟଦୁଃଖ ଭୋଗୁଛନ୍ତି ବୋଲି ପଚାରି ବୁଝିଲେ । ସନ୍ନ୍ୟାସୀଜଣଙ୍କ ଥିଲେ ବହୁତ ଶାନ୍ତ, ଶିଷ୍ଟ, ନମ୍ର ଓ ଭଦ୍ର । ସଂସାରରେ ମୋହମାୟା



ତ୍ୟାଗ କରି ସେ ଆଜୀବନ ସନ୍ନ୍ୟାସ ଗ୍ରହଣ କରିଥିଲେ । ସନ୍ନାସୀଜଣଙ୍କ ରହିମ୍ ଚାଚାଙ୍କ ଅବସ୍ଥା ଦେଖି ଦୁଃଖ ପ୍ରକାଶ କରି କହିଲେ, "ଏ ସଂସାରରେ ଯେତେ ଦିନ ଯାଏଁ ବଞ୍ଚିଛ, କର୍ମ କର, ଯାହା ବି କର୍ମ ମିଳୁଛି, ସେଥିପାଇଁ ହତାଶ ହୁଅନାହିଁ । ଚେଷ୍ଟା କର, ଧୈର୍ଯ୍ୟ ହରାଅ ନାହିଁ । ସବୁବେଳେ ମଣିଷ ଧାଇଁଥାଏ ଏହି ପେଟକୁ ପୂରଣ କରିବା ପାଇଁ; ଅନେକ ଦୁଃଖଯାତନା ସବୁ ସହିଥାଏ କେବଳ ଏଇ ପେଟ ଚାଖଣ୍ଡକ ପାଇଁ । ଶେଷରେ ଲୋଭ ହେଉଛି ମଣିଷର ପରମ ଶତ୍ରୁ । ଲୋଭ ମଣିଷକୁ ବେଆଇନ୍ କାମ କରିବା ପ୍ରବର୍ତ୍ତାଇଥାଏ । ତେଣୁ ଲୋଭ ପାଇଁ କୁକର୍ମ ନ କରି ସତ୍‌କର୍ମରେ ମନ ଦିଅ । ଦେଖିବ ତୁମକୁ ଆଲ୍ଲା ଶକ୍ତି ଦେବେ ।"

ସନ୍ନ୍ୟାସୀଙ୍କ ଠାରୁ ଏସବୁ ଶୁଣିବା ପରେ ରହିମ୍ ଚାଚାଙ୍କ ଆଖି ଖୋଲିଗଲା । ସେ ଗରିବ, ନିଃସହାୟ ପିଲାଙ୍କୁ ପାଠ ପଢ଼ାଇବା ପାଇଁ ସ୍ଥିର କଲେ । ସେଭଳି ପିଲା ବି ଜୁଟିଗଲେ । ଧୀରେ ଧୀରେ ପିଲା ବଢ଼ିଲେ । ଭିନ୍ନକ୍ଷମ ନିଃସହାୟ ପିଲାଙ୍କୁ ପାଠ ପଢ଼ାଇଲେ । ଶେଷରେ ସରକାରଙ୍କଠାରୁ ସାହାଯ୍ୟ ମିଳିଲା । ଲୋକମାନେ ତାଙ୍କର ଏ ମହତ୍ କାର୍ଯ୍ୟକୁ ଖୁବ୍ ପ୍ରଶଂସା କଲେ । ପୁଅ ମୁସ୍ତାକ୍ ବି ଆସି ବାପାଙ୍କୁ ସାହାଯ୍ୟ କଲା ଓ ପିଲାଙ୍କୁ ପାଠ ପଢ଼ାଇଲା ।

ସେ ମନେ ମନେ ସେ ସନ୍ନ୍ୟାସୀଙ୍କୁ ପ୍ରଣାମ କରନ୍ତି । ତାଙ୍କରି ଯୋଗୁଁ ଏସବୁ କିଛି ହୋଇପାରିଛି । ରହିମ୍ ଚାଚାଙ୍କ 'ସହାୟ ସ୍କୁଲ୍' ଏବେ ଖୁବ୍ ଭଲ ଚାଲୁଛି । ଏବେ ସେ ଭଲରେ ଚଳୁଛନ୍ତି । ବେଳେବେଳେ ଭାବନ୍ତି– ଆହା ଜାନି ଥାଆନ୍ତା କି କେତେ ଖୁସି ହୁଅନ୍ତା !

*ଖପୁରିଆ, ନେତାଜୀନଗର, ମଧୁପାଟଣା, କଟକ- ୧୦*



# ଆମେ ଅମୃତ ଝର

ଶ୍ରୀ ଚିତ୍ତରଞ୍ଜନ ପଟ୍ଟନାୟକ



ଆର ଜନମରେ ମଞ୍ଜିଟିଏ ଥିଲି
ଆକାଶକୁ ଚାହିଁ ବଢ଼ିଲି ମାଟିରେ
ସରଜିଛି ମୋତେ ବିଧାତା ସଂସାରେ
ସହର, ବଜାରେ, ଗାଆଁରେ ବଢ଼ିବି
ଆର ଜନମରେ ଶଅଁବାଳୁଆ ମୁଁ
ପୂରୁବ ପରିକା ନାହିଁ ଘୃଣା ଭାବ
ସବୁରି ପାଖରେ ମୋ ଛାଇ ପଡ଼ିଲେ
ମଖମଲୀ ରୂପ ଆଖିରେ ପଡ଼ିଲେ
ଆର ଜନମରେ ଶିଶୁ ଧ୍ରୁବ ଭକ୍ତ
ଉତ୍ତର ଆକାଶେ ଉଜ୍ଜ୍ୱଳି ଉଠିଲା
ଦିଗ ବାରୁଥିଲା ତାହାରି ସକାଶେ
ବୋହି ଆଣୁଥିଲା କେତେ ଯେ ଦରବ
ଆର ଜନମରେ ତାଳପତ୍ର ପୋଥି
ସାଇତି ରଖିବୁ ପାଠର ମହୁକୁ
ଜ୍ଞାନର ମହୁକୁ ବିତରିବୁ ଆନେ
ବିକଶିତ ହେବ ଜ୍ଞାନର ଆଲୋକ
ଆର ଜନମରେ ଗଛର ବକଳ
ଏହି ଜନମରେ ରାଶି-ରାଶି ବସ୍ତ୍ର
ଆର ଜନମରେ ସାଗର କୋଳରେ
ଏହି ଜନମରେ ଶଙ୍ଖ ରୂପ ନେଲି
ସକାଳସଞ୍ଜରେ ଶୁଭ ଶଙ୍ଖଧ୍ୱନି
ଅନ୍ତରେ ଖେଳାଏ ଭକତିର ଭାବ
ଆର ଜନମରେ ଆମେ ତ ବାନର
ଦୁର୍ଲଭ ଜନମ କହନ୍ତି ସଭିଏଁ
ଜନମ କରିଛି ବିଧାତା ମାଟିରେ
ଆମେ ତ ଶିଳିପୀ, ଆମେରେ ଶ୍ରମିକ

ଏହି ଜନମରେ ଗଛ,
ମୁଖେ ଅନାବିଳ ହସ ।
କରମ କରିବି ମୁହିଁ,
ହସାଇ ଜନମଭୂଇଁ ।
ଏ ଜନମେ ପ୍ରଜାପତି,
ସଭିଙ୍କର ପ୍ରିୟ ଅତି ।
ଶୁଭରେ ହୁଅଇ ଗଣା,
ଶିଶୁଏ ହୁଅନ୍ତି ବଣା ।
ଏ ଜନମେ ଧ୍ରୁବତାରା,
ବିଛାଡ଼ି ଆଲୋକଧାରା ।
ଆମରି ବଣିକ ଭାଇ,
ଦେଶର ବିଭବ ପାଇଁ ।
ଏହି ଜନମରେ ବହି,
ସକଳ ଯାତନା ସହି ।
ଚିନ୍ତିବୁ ସକଳ ହିତ,
ମନରେ ରଖିବୁ ମିତ ।
ଅଙ୍ଗ ପରିଧାନ ପରା,
ପରାଣେ ପୁଲକ ଭରା ।
ବଢ଼ିଲି ଶାମୁକା ହୋଇ
ସବୁରି ପରାଣ ମୋହି ।
ପ୍ରତିଧ୍ୱନି ଚଉପାଶ,
ତୁଟାଏ ବେଦନା ତ୍ରାସ ।
ଏହି ଜନମରେ ନର,
'ଆମେ ଅମୃତର ଝର' ।
ସୁନ୍ଦର କରିବୁ ଧରା
ନିହାଣ, ମୁଗୁର ପରା ।

*'ନିଗମ ନିବାସ', ଘୁଟୁକେଶ୍ୱରୀ, ନରଣପୁର, କେନ୍ଦୁଝର- ୭୫୮୦୧୪*

# ଚାତକ ରହିଛି ଆକାଶେ ଚାହିଁ

ଶ୍ରୀ ମହେନ୍ଦ୍ର କୁମାର ଘଡ଼େଇ

ସେଦିନ ଥିଲା ରବିବାର । ଛୁଟି ଯୋଗୁଁ ଶୁଭେନ୍ଦୁବାବୁ ଘରବାହାର ସବୁ ସଫା କରି ଅଳିଆ ବାହାରେ ପକାଇଲେ । ମାଟିକାଦୁଅରେ ଅସନା ହୋଇଥିବା ମଟର ସାଇକେଲକୁ ପାଇପ୍ ଲଗାଇ ସଫା କଲେ ।

ଏତିକିବେଳେ ଘର ଭିତରୁ ସ୍ତ୍ରୀ ଡାକଦେଲେ, "ରୋଷେଇ କାମ ସାରିଲିଣି । ଶୀଘ୍ର ଗାଧୋଇ ମନ୍ଦିର ଯାଇ ଫେରିଲେ ଖାଇବା ।" ଶୁଭେନ୍ଦୁବାବୁ ତରବରରେ ଗାଧୁଆଘରକୁ ପଶିଗଲେ । ଦେହମୁଣ୍ଡରେ ସାବୁନ୍, ତେଲ ଲଗାଇ କଳରୁ ମନଇଚ୍ଛା ଜଳ ବୁହାଇଦେଲେ । ଓଃ କି ଶାନ୍ତି ! କହି ଗାଧୋଇବାରେ ଲାଗି ପଡ଼ିଲେ ।

କ୍ରିଂ କ୍ରିଂ କରି ଘର ଭିତରୁ ମୋବାଇଲଟା ବାଜି ଉଠିଲା । ଶୁଭେନ୍ଦୁବାବୁ ଆଉ କି ସମ୍ଭାଳି ହୁଅନ୍ତି ? ଲୁଗାଟାଏ ବଦଳାଇ ଗୋଟାଏ ଡିଆଁରେ ଫୋନ୍ ଉଠାଇଲେ । ଦି'ଚାରିପଦ କଥା ହୋଇ ଠାକୁରଘରେ ପୂଜାରେ ବସି ପଡ଼ିଲେ । ପୂଜାରୁ ଉଠି ସ୍ୱାମୀ, ସ୍ତ୍ରୀ ଦୁହେଁ ସିଧା ମନ୍ଦିର ଚାଲିଲେ ।

ଟିକିପୁଅ ବବୁଲ୍ ଖେଳରୁ ଫେରି ଦେଖିଲା ବାପାମା' ଘରେ ନାହାନ୍ତି । ଦୁଆର ଜଗିଛି ଚାକରପିଲା । ପାଇପ୍‌ରୁ ଧାର ଧାର ପାଣି ଯାଇ ଦାଣ୍ଡ କାଦୁଅ । ବନ୍ଦ କରିଦେଲା କଳ । ଘର ଭିତରକୁ ପଶିଗଲା ବେଳକୁ ସେହି ଏକା ଦଶା । ଗାଧୁଆଘର କଳରୁ ପାଣି ପଡୁଥିବାର ଶବ୍ଦ । ପାଣି ସୁଅରେ ଘର ଭିତରଟା ଲହଡ଼ି ଖେଳୁଛି । ଆଗ ଯାଇ କଳ ବନ୍ଦ କରି ଆଲୁଅ ଲିଭାଇଦେଲା । ନାଳି ବାଟ ଦେଇ ସୁଅ କାଟୁଥିବା ପାଣିକୁ ହାତରେ ଶାଗ କିଆରି ପର୍ଯ୍ୟନ୍ତ ବାଗେଇଦେଲା ।

କିଛି ସମୟ ପରେ ବାପାମା' ଘରକୁ ଫେରିଲେ । ଦେଖିଲେ ବାଡ଼ି ଶାଗ କିଆରି ପାଖରେ ବବୁଲ୍ ଠିଆ ହୋଇଛି । ହାତଗୋଡ଼ ପାଣିକାଦୁଅରେ ଜଡ଼ସଡ଼ । ପାଖକୁ ଡାକି ମା' କହିଲେ, "ଆମେ ଘରେ ନାହୁଁ ବେଲି ତୁ ଏମିତି ପାଣିକାଦୁଅରେ ଖେଳୁଛୁ ? ଥଣ୍ଡା, ଜର ହେବନି ? ଦେହ ଖରାପ ହେଲେ ଖେଳାବୁଲା, ପାଠପଢ଼ା ସବୁ ଅଟକିଯିବ । ସବୁଥିରେ ପଛେଇ ଯାଇ ଦୁଃଖ ଭୋଗିବୁ ।"

ଭାରି ସୁଧାର ପିଲା ବବୁଲ୍ । ବାପାମା'ଙ୍କ ମୁହଁରେ କେବେ ଜବାବ ଦିଏନି । ଗୁରୁଜନ କି ସାଙ୍ଗସାଥୀ କାହା ମନରେ କଷ୍ଟ ଦେଲା ଭଳି କଡ଼ା କଥା କହେନି । ଆଜି ସିଏ ନିର୍ଦୋଷ, ଏ କଥା ସିଏ କେମିତି ମୁହଁ ଖୋଲି କହିବ ?

ଦୋଷୀ ଭଳି ଚୁପ୍‌ଚାପ୍ ଠିଆ ହୋଇ ଆଖିରୁ ଲୁହ ଗଡ଼େଇବାକୁ ଲାଗିଲା ।

ମା' କୋଳେଇନେଇ ଲୁହ ପୋଛିଦେଇ କହିଲେ, "ଆରେ ଏଇ କଥାରେ ତୁ ଏମିତି କାନ୍ଦୁଛୁ ? ତୋ' ଭଲ ପାଇଁ, ଆମ ପରିବାରର ମଙ୍ଗଳ ପାଇଁ କ'ଣ ଦି'ପଦ କହିଲି ବୋଲି ମନଦୁଃଖ କରୁଛୁ ? ନାଁରେ ତୁ ପରା ଆମ ଏକୋଇରବଳା ବିଶିକେଶନ !"

ମା'ଙ୍କ ଠାରୁ ସାହସ ପାଇ ବବୁଲ୍ କହିଲା, "ଆମ ବିଜ୍ଞାନ ଗୁରୁଜୀ କହୁଥିଲେ ଆବଶ୍ୟକତାଠାରୁ ଅଧିକ ଖର୍ଚ୍ଚ ଅର୍ଥ ସଙ୍କଟ । ଚାରିଆଡ଼େ ଏବେ ଜଳର ସଙ୍କଟ ଅନୁଭବ ହେଲାଣି । ଏକଥା ମୋର ମନେ ଥିଲା । ଖେଳିବୁଲି ଘରକୁ ଫେରିଲା ବେଳକୁ ଦେଖିଲି ଦାଣ୍ଡରେ ପାଇପ୍‌ରୁ ଧାରଧାର ପାଣି ଛୁଟୁଛି । ତେଣେ ଗାଧୁଆଘର କଳରୁ ପାଣି ବାହାରି ଘରେ ଲହଡ଼ି ଖେଳୁଛି । ନଳାବାଟ ଦେଇ ଯାଉଥିବା ବେକାର ପାଣିକୁ ଶାଗ କିଆରିରେ ମଡ଼ାଇ ଦେଉଥିଲି ।

ଏ ପାଣି ନଷ୍ଟ ହୋଇଥା'ନ୍ତା । ଆଉ ପରେ ତୁମେ ପାଇପରୁ ପୁଣି ପାଣି ନେଇ ଶାଗକିଆରୀରେ ମଡ଼ାଇଥା'ନ୍ତ । ତେଣୁ ଜଳ ଅପଚୟକୁ ରୋକିବାକୁ ଯାଇ...... ।"

କଥା ବୁଝିବାକୁ ମା'ଙ୍କୁ ଆଉ ବେଶୀ ସମୟ ଲାଗିଲାନି । ସେ ବୁଝିଗଲେ । ଭୁଲାମନରେ ବବୁଲ୍‌ବାପା ଦାନ୍ତ ପାଇପ୍ ଓ ଗାଧୁଆଘର କଳ ବନ୍ଦ କରି ନ ଥିଲେ । ଅଯଥା ନଷ୍ଟ ହେଉଥିବା ପାଣିକୁ କାମରେ ଲଗାଇଛି ବବୁଲ୍ । ବାଃ ! ଧନ ମୋର କେଡ଼େ ବଢ଼ିଆ କାମ ନ କରିଛି ସତେ ?



ମା' ପିଠି ଆଉଁସି ଦେଇ କହିଲେ, "କେବଳ ତୁ କାହିଁକି, ଆମେ ସମସ୍ତେ ଯଦି ଏମିତି ଅପଚୟକୁ ରୋକି ପାରିବା, ତେବେ କେଉଁ କ୍ଷେତ୍ରରେ ସଙ୍କଟ ପଡ଼ିବନି କି ଚିନ୍ତା ବଢ଼ିବନି ।

ଅମାପ ସମ୍ପତ୍ତି ଅଛି ବୋଲି ଆମେ ଯଦି ସେଥିରୁ କେବଳ ବସି ବସି ଖର୍ଚ୍ଚ କରିବା, ତେବେ ତାହା କେତେ ଦିନ ? ଦିନ କେତେଟାରେ ତାହା କୁଆଡ଼େ ସରିଯିବ । ଜଳ ବି ସେମିତି । ଆମ ପାଖରେ ଭରା ଜଳ ଅଛି ବୋଲି ଭାବିବା ଠିକ୍ ନୁହେଁ । ଏପରି କେତେକ ଦେଶ ଅଛି, ସେମାନେ ଜଳ କିଣିଥାନ୍ତି । ମାପିଚୁପି କମ୍ ଜଳ ବ୍ୟବହାର କରନ୍ତି । ଜଳର ଅଭାବ କେତେ ଜାଗାରେ ମରୁଭୂମି ସୃଷ୍ଟି କରିଛି ।

ପ୍ରାଣୀ ବା ଉଦ୍ଭିଦର କୋଷ ପାଇଁ ତ ଜଳ ଲୋଡ଼ା । ଖାଦ୍ୟ ହଜମ, ଶରୀରର ତାପମାତ୍ରା ନିୟନ୍ତ୍ରଣ ପାଇଁ ବାହାରୁଥିବା ଝାଳ ତ ଜଳର ଖେଳ ।

ହୁ ହୁ ହୋଇ ବଢୁଥିବା ଜନସଂଖ୍ୟା, କଳକାରଖାନା ଗଢ଼ି ନିର୍ଦ୍ଦୟ ଭାବେ କଞ୍ଚାଗଛ କାଟି ପକାଇବା, ପରିବେଶକୁ ନିୟମିତ ଦୂଷିତ କରିବାଦ୍ୱାରା ଅନିୟମିତ ବୃଷ୍ଟିପାତ ଓ ଆର୍ଦ୍ରଭୂମିର ଅଭାବ ଏହି ସମସ୍ୟାକୁ ଆହୁରି ବଢ଼ାଇ ଦେଉଛି ।

ଏହାଦ୍ୱାରା ଠିକ୍ ସମୟରେ କୃଷିକାମ କରିହେଉନି କି କଳକାରଖାନା ଗାଡ଼ିମଟରକୁ ବିଦ୍ୟୁତ ଶକ୍ତି ଯୋଗାଇ ହେଉନି । ତା'ପାଇଁ ସବୁଠି ଭାଳେଣି । କେମିତି ଏଥିରୁ ମୁକ୍ତି ପାଇବା ?

ଆମେ ଏଭଳି ଅପଚୟ କାମରୁ ସବୁବେଳେ ବିରତ ରହିବା ଦରକାର । କଥାରେ ଅଛି ପରା 'ସଞ୍ଚିଲେ ବଞ୍ଚିବା' । ଝିଣ୍ଟିକାଟି ଭବିଷ୍ୟତ ପାଇଁ ସାଇତି, ଖେଳିବୁଲି ସମୟ ଗଡ଼େଇ ଦେଇଥିବାରୁ ପିମ୍ପୁଡ଼ି ପାଖରେ ହାତ ପାତିବାକୁ ପଡ଼ିଥିଲା । ଚାତକ ପକ୍ଷୀଟି କିପରି ବର୍ଷାଜଳକୁ ତହଳବିକଳରେ ଚାହିଁ ରହିଛି । ଦିନ ଆସିବ, ଅସାବଧାନତା ପାଇଁ ଆମକୁ ଏମିତି ଦଶା ଭୋଗିବାକୁ ପଡ଼ିବ ।"

ତା'ପରେ ଶୁଭେନ୍ଦୁର ବାପା କହିଲେ, "ଆଉ କୁହନି ! ବବୁଲ୍ ଯାହା କରି ଦେଖାଇଲା, କେବଳ ମୁଁ କାହିଁକି ଦୁନିଆର ସମସ୍ତେ ଏମିତି ଭଲ ଅଭ୍ୟାସକୁ ଅପଣାଇନେବା ଦରକାର । ସତରେ ସେ ଆଜି ମୋର ଆଖି ଖୋଲିଦେଇଛି । ସେଥିପାଇଁ ବୁଲିବୁଲି ମୁଁ ସବୁଠି କହିବି; 'ଜଳ ସଞ୍ଚିବା, ସୁସ୍ଥ ବଞ୍ଚିବା ।'

*କ୍ଷେତ୍ରମୋହନ ବିଦ୍ୟାପୀଠ, କଟରପଡ଼ା, ପିଠାପଡ଼ା, ନିଶ୍ଚିନ୍ତ କୋଇଲି, କଟକ*

# ଏଇଟା ମୋ ଘର

## ଶ୍ରୀ ରବୀନ୍ଦ୍ର କୁମାର ବେହେରା

ଆଲବର୍ଟ ଆଇନ୍‌ଷ୍ଟାଇନ୍ ଜଣେ ବିଶ୍ୱବିଦିତ ପଦାର୍ଥ ବିଜ୍ଞାନୀ । ବିଶ୍ୱବିଜ୍ଞାନ ଜଗତକୁ ତାଙ୍କର ଦାନ ଅତୁଳନୀୟ । ବହୁ ଗୂଢ଼ ବୈଜ୍ଞାନିକ ତତ୍ତ୍ୱର ସେ ହେଉଛନ୍ତି ଆଦ୍ୟ ସ୍ରଷ୍ଟା । ତାଙ୍କର 'ଆପେକ୍ଷିକ ତତ୍ତ୍ୱ' ପଦାର୍ଥ ବିଜ୍ଞାନର ଏକ କାଳଜୟୀ ତଥ୍ୟ । ତାଙ୍କ ପରି ବିରଳ ପ୍ରତିଭାଧର ଆଜି ପର୍ଯ୍ୟନ୍ତ ପୃଥିବୀରେ ଜନ୍ମଲାଭ କରିନାହାନ୍ତି । ଏକ ସଙ୍ଗରେ ଦୁଇ ହାତରେ ଲେଖିବାର ଅଦ୍ଭୁତ ଦକ୍ଷତା ତାଙ୍କର ଥିଲା । ପ୍ରାୟ ସବୁ ବୈଜ୍ଞାନିକଙ୍କ ପରି ସେ ଥିଲେ ଖିଆଲୀ ଓ ଭୁଲା ମଣିଷର ବ୍ୟକ୍ତି । ଅନ୍ୟମନସ୍କ ଆଇନ୍‌ଷ୍ଟାଇନଙ୍କୁ ନେଇ ଇତିହାସ ପୃଷ୍ଠାରେ ବହୁ ରୋଚକପୂର୍ଣ୍ଣ ଘଟଣା ଲିପିବଦ୍ଧ ହୋଇ ରହିଅଛି, ଯାହାକୁ ପାଠକରି ତାଙ୍କର ଅନୁଗାମୀମାନେ ହସି ହସି ବେଦମ ହୋଇଯାଆନ୍ତି ।

ଏମିତି ଥରେ ଆଇନ୍‌ଷ୍ଟାଇନ୍ ତାଙ୍କର ଜଣେ ସାଙ୍ଗ ଘରକୁ ନିମନ୍ତ୍ରିତ ହୋଇଥିଲେ । ସେଠାକୁ ଅନେକ ମାନ୍ୟଗଣ୍ୟ ବ୍ୟକ୍ତି ତାଙ୍କ ପରି ନିମନ୍ତ୍ରିତ ହୋଇ ଯାଇଥିଲେ । ଖିଆପିଆର ଆସର ଚାଲିଲା । ଭାବର ଆଦାନପ୍ରଦାନ ହେଲା । ତା'ପରେ ଧୀରେ ଧୀରେ ସବୁ ଅତିଥି ଜଣ ଜଣ ହୋଇ ସେ ଘରୁ ବିଦାୟ ନେଇଗଲେ; କିନ୍ତୁ ରହିଗଲେ ଆଇନ୍‌ଷ୍ଟାଇନ୍ । ସେ ଫେରି ଆସିବାର ନାଁ ଧରୁ ନ ଥାଆନ୍ତି । ଏଣେ ତାଙ୍କ ବନ୍ଧୁ ବ୍ୟସ୍ତ ହୋଇପଡ଼ିଲେ । ବାଧ୍ୟବାଧକତାରେ ସେ ଆଇନଷ୍ଟାଇନ୍‌ଙ୍କ ସହ କଥାବାର୍ତ୍ତା ଜାରି ରଖିଥାନ୍ତି । ତାଙ୍କ ଘରୁ ଚାଲିଯିବା ପାଇଁ ବନ୍ଧୁଜଣଙ୍କ କହି ପାରୁ ନ ଥାଆନ୍ତି ।

ଠିକ୍ ସେହିପରି ଆଇନ୍‌ଷ୍ଟାଇନ୍ ମଧ୍ୟ ତାଙ୍କ ବନ୍ଧୁଙ୍କ ସହ କଥାବାର୍ତ୍ତା କରି ଚାଲିଥାଆନ୍ତି । କାରଣ ସେ ନିଜ ଘରେ ବସି ବନ୍ଧୁଙ୍କ ସହ କଥାବାର୍ତ୍ତା କରୁଛନ୍ତି ବୋଲି ମନେ ମନେ ଧରି ନେଇ ଥାଆନ୍ତି । ସୌଜନ୍ୟ ଦୃଷ୍ଟିରୁ ସେ ବନ୍ଧୁଙ୍କ ସହ ତାଳ ଦେଇ ହୁଁ ହାଁ ମାରି ଚାଲି ଥାଆନ୍ତି । ଉଭୟେ ମନ କଥା ମନରେ ରଖି କଥାବାର୍ତ୍ତାରେ ମଜି ଯାଇଥାଆନ୍ତି । ଏହିପରି ବହୁ ସମୟ ଅତିକ୍ରାନ୍ତ ହୋଇଗଲା । ଏହାପରେ ଆଇନ୍‌ଷ୍ଟାଇନ୍ ଆଉ ସମ୍ଭାଳି ହୋଇ ରହିପାରିଲେ ନାହିଁ । ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା ।

ସେ ନିଜଆଡ଼ୁ ତାଙ୍କ ବନ୍ଧୁଙ୍କୁ କହିଉଠିଲେ, "ବନ୍ଧୁ, ରାତି ବହୁତ ହୋଇଗଲାଣି । ମୋର ବି ଜରୁରୀ କାମ ଅଛି । ଦୟାକରି ଆପଣ ମୋ ଘରୁ ଯାଆନ୍ତୁ । ଆମେ ପଛରେ କଥାବାର୍ତ୍ତା ହେବା ।"

ଏକଥା ଶୁଣି ତାଙ୍କ ବନ୍ଧୁ ଜୋର୍‌ରେ ହସି ଉଠିଲେ । ଏଥର ସତ୍ୟାସତ୍ୟ ଜାଣିଗଲେ । ଆଇନ୍‌ଷ୍ଟାଇନ୍ ଜଣେ ଭୁଲା ବ୍ୟକ୍ତି ବୋଲି ସେ ଶୁଣିଥିଲେ । ଏବେ ସେ ନିଜ ଆଖିରେ ଦେଖୁଛନ୍ତି । ଡେରି ନ କରି ସେ କହି ଉଠିଲେ, "ବନ୍ଧୁ, ଏଟା ମୋ ଘର । ଆଜି ଦିନକ ପାଇଁ ଆପଣ ମୋ ଘରକୁ ଅତିଥି ହୋଇ ଆସିଥିଲେ । ଅନ୍ୟ ସବୁ ଅତିଥି ଜଣ ଜଣ ହୋଇ ଚାଲି ଗଲେଣି । ଦୟାକରି ଆପଣ ମୋ ଘରୁ ଯାଆନ୍ତୁ । ମୁଁ ବହୁତ କ୍ଲାନ୍ତ । ମୋର ବିଶ୍ରାମ ଦରକାର ।"





# ଧାଡ଼ି

ଶ୍ରୀ ହଂସନାଥ ମୁଦୁଲି

ଥରେ ଜଙ୍ଗଲର ପଶୁପକ୍ଷୀମାନେ ମିଳିମିଶି ଭୋଜିଟିଏ କରିଥାନ୍ତି । ଭୋଜି ପୂର୍ବରୁ ଗୋଟିଏ ଛୋଟ ସଭା ହୋଇଥିଲା । ସଭା ଶେଷ ହେବା ପରେ ସମସ୍ତେ ଖାଇବାସ୍ଥଳରେ ରୁଣ୍ଡ ହେଲେ ।

ଖାଇବା ଆରମ୍ଭ ସମୟରେ ସମସ୍ତ ପଶୁପକ୍ଷୀ ଏକକାଳୀନ ଭିଡ଼ ଜମାଇବା ଭୟରେ ଆୟୋଜନମଣ୍ଡଳୀ ଖାଇବା ସ୍ଥାନରେ ତିନି ଚାରୋଟି ଭୋଜିସ୍ଥଳର ବ୍ୟବସ୍ଥା ବି କରିଥାନ୍ତି । ଗୋଟିଏ ଭୋଜିସ୍ଥଳରେ ବଡ଼ ବଡ଼ ପଶୁ ଯଥା ସିଂହ, ହାତୀ, ବାଘ ଇତ୍ୟାଦିଙ୍କ ପାଇଁ । ଆଉ ଗୋଟିଏ ଭୋଜିସ୍ଥଳରେ ଅପେକ୍ଷାକୃତ ସାନ ଜୀବଜନ୍ତୁ– ହରିଣ, ଠେକୁଆ, ଗଧ ଆଦି ଜନ୍ତୁଙ୍କ ପାଇଁ ଥାଏ । ତୃତୀୟ ଭୋଜିସ୍ଥଳଟି ଜନ୍ଦା, ପିମ୍ପୁଡ଼ି, ଉଇ ଆଦି ଅତି ଛୋଟ ଛୋଟ ଜୀବଙ୍କ ପାଇଁ ରହିଥାଏ ।

ପକ୍ଷୀମାନଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇଥାଏ । ଏମିତି ଆହୁରି କେତୋଟି ବିଶେଷ ଖାଇବା ବ୍ୟବସ୍ଥା କରାଯାଇଥାଏ ।

ସଭା ଶେଷ ହେଲାବେଳକୁ ସବୁ ପଶୁପକ୍ଷୀଙ୍କର କ୍ଷୁଧା ବଢ଼ିଯାଇଥାଏ । ତେଣୁ ସେମାନଙ୍କ ମଧ୍ୟରୁ ଅନେକ ତରତର ହୋଇ କିପରି ପ୍ରଥମେ ଖାଇବେ, ସେଥିପାଇଁ ବ୍ୟଗ୍ର ହୋଇ ଉଠୁଥାନ୍ତି ।

ପ୍ରଥମ ଭୋଜିସ୍ଥଳରେ ବଡ଼ ବଡ଼ ଜୀବଜନ୍ତୁଙ୍କର ଭିଡ଼ ଥିଲା ପ୍ରବଳ । ସମସ୍ତେ ମାଡ଼ିଯାଉଥାନ୍ତି ଖାଦ୍ୟ ଆଣିବାକୁ । ହାତରେ ଥାଏ ଥାଳି ଓ ଚାମଚ । ଠେଲାପେଲା ଖୁବ୍ ଜୋର୍‌ରେ ଲାଗିଥାଏ । ଯାହାର ଅଧିକ ବଳ ଥାଏ, ସେ ଅନ୍ୟମାନଙ୍କୁ ଧକ୍କା ଦେଇ ଆଗକୁ ଚାଲିଯାଉଥାଏ ଓ ଥାଳିରେ ଖାଦ୍ୟ ଧରି ବାହାରକୁ ଚାଲିଆସୁଥାଏ । ଦ୍ୱିତୀୟ ଭୋଜିସ୍ଥଳରେ ବି ଅବସ୍ଥା ସେହିପରି । ସେଠାରେ ବି ଠେଲାଠେଲି ଦଳାଦଳି ଚାଲିଥାଏ । ଜଣେ ଆଉଜଣଙ୍କୁ ବାଟ ନ ଛାଡ଼ି ଆଗକୁ ଯିବାକୁ ଚେଷ୍ଟା କରୁଥାଏ । ଫଳରେ ଜଣେ ଜଣେ ଖଣ୍ଡିଆଖାବରା ହେଉଥା'ନ୍ତି ।

ପକ୍ଷୀମାନଙ୍କର ଅବସ୍ଥା ବି ସେହିପରି । ଯଦିଓ ସେମାନେ ଉଡ଼ି ଉଡ଼ି ଆସୁଥିବାରୁ ଧକ୍କା ମରାମରି ଟିକିଏ କମ୍ ଥାଏ; ତଥାପି ଠେଲାପେଲାରେ କମ୍ ନ ଥାଏ ।

ଏହି ସମୟରେ ସିଂହରାଜା ଭୋଜନସ୍ଥଳକୁ ପ୍ରବେଶ

---

ଏ କଥାରେ ଆଇନଷ୍ଟାଇନ୍ ପ୍ରକୃତିସ୍ଥ ହୋଇଗଲେ । ନିଜକୁ ସଜାଡ଼ି ନେଲେ । ପରିସ୍ଥିତିକୁ ହାଲୁକା କରିବାକୁ ଯାଇ ସେ ବନ୍ଧୁଙ୍କ ସହ ତାଳ ଦେଇ ଜୋର୍‌ରେ ହସିଉଠିଲେ । ବନ୍ଧୁଙ୍କୁ ଧନ୍ୟବାଦ ଦେଇ ସେ ବିଳମ୍ବିତ ରାତ୍ରିରେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

*ପ୍ରଧାନ ଶିକ୍ଷକ, କଳିଙ୍ଗ ନୋଡାଲ୍ ଉ:ପ୍ରା: ବିଦ୍ୟାଳୟ, ଚୌଦ୍ୱାର, କଟକ*

କଲେ । ସେ ପ୍ରଥମେ ଚାରୋଟିଯାକ ଭୋଜନସ୍ଥଳକୁ ନଜର ପକାଇଦେଲେ । ପ୍ରତିସ୍ଥଳର ଘଟଣାକୁ ମନରେ ରଖି ସେ ସମସ୍ତ ଜୀବଜନ୍ତୁଙ୍କୁ ପାଖକୁ ଡାକି କହିଲେ, "ମୋର ପ୍ରିୟ ଭାଇଭଉଣୀମାନେ, ମୋ ଆଡ଼କୁ ଟିକିଏ ଧ୍ୟାନ ଦିଅ ।"

ସେମିତି ଖାଇବା ଅବସ୍ଥାରେ ଜୀବଜନ୍ତୁମାନେ ସିଂହକୁ ଲକ୍ଷ୍ୟ କଲେ । ସିଂହ ପ୍ରଥମ ତିନୋଟି ଭୋଜନସ୍ଥଳର ଜୀବଜନ୍ତୁମାନଙ୍କୁ ଲକ୍ଷ୍ୟ କରି କହିଲେ, "ମୁଁ ଦେଖୁଛି ତମେମାନେ ସମସ୍ତେ ପ୍ରଥମେ ଖାଦ୍ୟ ଆଣିବା ପାଇଁ ତରତର ହେଉଅଛ । ଏହାଦ୍ୱାରା ଯେଉଁସବୁ ଅସୁବିଧା ହେବାର ମୁଁ ଦେଖୁଛି, ତାହା ହେଉଛି- ଠେଲାପେଲା ହେବାଦ୍ୱାରା ସମୟ ନଷ୍ଟ ହେଉଛି, ଆଘାତପ୍ରାପ୍ତ ହେଉଛ, ଖାଦ୍ୟ ନଷ୍ଟ ହେଉଛି ଏବଂ ସମ୍ମାନରେ ଆଞ୍ଚ ଆସୁଛି । ତେଣୁ ଏପରି ନ କରି ଗୋଟିଏ ନୀତିନିୟମ ମାନିବାକୁ ହେବ । ପଛରୁ ଜଣେ କେହି କହିଉଠିଲେ, "କି ନୀତିନିୟମ ଆଜ୍ଞା ?"

ଏକଥା ଶୁଣି ସିଂହ କହିଲେ, "ତମେ ସବୁ ଚତୁର୍ଥ ଭୋଜନସ୍ଥଳୀକୁ ଲକ୍ଷ୍ୟକଲେ ସବୁ ବୁଝିପାରନ୍ତ । ଚତୁର୍ଥସ୍ଥଳୀରେ ଅତି ଛୋଟ ଛୋଟ ଜୀବ– ପିମ୍ପୁଡ଼ି, ଜନ୍ଦା, ଉଇ ଆଦି । ଦେଖ ତ, ସେମାନେ କିପରି ଧାଡ଼ି ବାନ୍ଧି ଯାହା ସବୁ କରୁଛନ୍ତି । ତାଙ୍କ ଭିତରେ ଠେଲାପେଲା ଆଦୌ ନାହିଁ । ମୋର ଆଶା, ତମେ ସମସ୍ତେ ଏଥର ଧାଡ଼ି ବାନ୍ଧିବା ଶିଖ । ଯେ କୌଣସି କାମ ହେଉନା କାହିଁକି, ଏକାଧିକ ଜଣ ଉପସ୍ଥିତି ଥିଲେ ଧାଡ଼ିରେ ହିଁ ଯିବା ନିହାତି ଜରୁରୀ ।"

ସିଂହ କଥାକୁ ସମ୍ମତି ଜଣାଇ ସଭିଏଁ ଏକସ୍ୱରରେ କହିଲେ, "ଠିକ୍ କଥା । ଆମେ ଏବେ ଧାଡ଼ି କରିବାର ମହତ୍ତ୍ୱ ବୁଝିଲୁ । ଆଉ କୌଣସି ଅସୁବିଧା ହେବନାହିଁ ।" ଏଥର ସମସ୍ତେ ଆରାମରେ ଭୋଜି ଖାଇ ନିଜ ନିଜ ଘରକୁ ଫେରିଲେ ।

*ଖଣ୍ଡଗିରି (ଡୁମଡୁମା-କ), ଭୁବନେଶ୍ୱର- ୭୫୧୦୩୦*

# ନୀଳପଦ୍ମର ଉଦ୍ୟାନ

(The blue lotus garden of Australia)

ଡାକ୍ତର ଶାନ୍ତି କାନୁନ୍‌ଗୋ

ଆମେ ୨୦୧୫ ମସିହା ଡିସେମ୍ବର ମାସରେ ଅଷ୍ଟ୍ରେଲିଆର ଏହି ନୀଳପଦ୍ମର ଉଦ୍ୟାନକୁ ଯାଇଥିଲୁ । ମେଲ୍‌ବୋର୍ଣ୍ଣଠାରୁ ଗାଡ଼ିରେ ଗଲେ ୧ ଘଣ୍ଟା ଲାଗେ । ପ୍ରାୟ ୧୪ ଏକର ଜମିରେ ବଡ଼ ବଡ଼ ଜଳାଶୟ ବା ହ୍ରଦ ଅଛି । ସମସ୍ତ ଜଳାଶୟ ଭିନ୍ନ ଭିନ୍ନ ରଙ୍ଗର ପଦ୍ମଫୁଲରେ ପୂର୍ଣ୍ଣ । ଆମ ଦେଶରେ ପଦ୍ମଫୁଲ ଗୋଲାପି ବା ଗାଢ଼ ଗୋଲାପି, ଧଳା ରଙ୍ଗ ଥିବା ଦେଖିଥାଉ । କିନ୍ତୁ ଏହି ଜଳ ଉଦ୍ୟାନରେ ଗୋଲାପି, ଲାଲ୍, ଧଳା, ଈଷତ୍ ହଳଦିଆ ଓ ନୀଳ ରଙ୍ଗର ପଦ୍ମଫୁଲର ସମାରୋହ ଦର୍ଶକମାନଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥାଏ । ସେଇ ଅନୁଭୂତିକୁ ଭାଷାରେ ପ୍ରକାଶ କରିବା କେବଳ ସୌନ୍ଦର୍ଯ୍ୟପିପାସୁ କବିମାନଙ୍କ ପକ୍ଷରେ ସମ୍ଭବ ।

ଏହି ନୀଳପଦ୍ମ ଆମ ଦେଶର କଇଁ ପରି; କିନ୍ତୁ ଏହା ଆକାରରେ ବହୁତ ବଡ଼ ଓ ପତ୍ର ମଧ୍ୟ ପଦ୍ମପତ୍ର ପରି । ଏହି ନୀଳପଦ୍ମକୁ ୨/୩ଟି ଜଳାଶୟରେ ପୃଥକ ଭାବରେ ରଖାଯାଇଛି । ସେଥିପାଇଁ ଏହି ଉଦ୍ୟାନର ନାମ 'ନୀଳପଦ୍ମର ଉଦ୍ୟାନ' । ଏଠାରେ ପ୍ରତିଦିନ ଦର୍ଶକମାନଙ୍କ ସଂଖ୍ୟା ବୋଧହୁଏ ୧୦୦୦ ବା ତା'ଠାରୁ ବେଶୀ । ଗୋଟିଏ ହ୍ରଦରୁ ଅନ୍ୟ ହ୍ରଦକୁ ବୁଲି ଦେଖିବା ପାଇଁ କାଠରେ ତିଆରି ସେତୁ ସବୁ ଅଛି । ବୁଲି ବୁଲି କ୍ଳାନ୍ତ ଲାଗିଲେ ବସିବା ପାଇଁ ମଝିରେ ମଝିରେ ବୁଦା ତଳେ କାଠର ବେଞ୍ଚ ସବୁ ଅଛି ।

ଡିସେମ୍ବର ମାସର ୨୭ ତାରିଖରୁ ଅପ୍ରେଲ ମାସର ପ୍ରଥମ ସପ୍ତାହ ପର୍ଯ୍ୟନ୍ତ ପ୍ରତିଦିନ ସକାଳ ୯ଟାରୁ ସନ୍ଧ୍ୟା ୫ଟା ପର୍ଯ୍ୟନ୍ତ ଏହା ଦର୍ଶକମାନଙ୍କ ପାଇଁ ଉନ୍ମୁକ୍ତ ରହେ । ଖାଇବା ପାଇଁ ଭୋଜନାଳୟ ମଧ୍ୟ ଏଠାରେ ଅଛି । ପିଲାମାନେ ଖେଳିବା ପାଇଁ ଛୋଟ ଛୋଟ ପାର୍କ ଅଛି । ସେଠାରେ ଦୋଳି, ବଲ୍ ଖେଳିବାର ସୁବିଧା ଅଛି । ପାର୍କ ମଧ୍ୟରେ ଛୋଟ ଛୋଟ ପରୀମୂର୍ତ୍ତି ରଖାଯାଇଛି । ସେଥିପାଇଁ ଏହାକୁ ପରୀଉଦ୍ୟାନ (Fairy Garden) କହନ୍ତି ।

୪୦ ବର୍ଷ ପୂର୍ବେ ଏହି ଜମି ଜଣେ ବ୍ୟବସାୟୀଙ୍କର ଥିଲା । ସେ ସେଥିରେ କୋବି ଚାଷ ସହ ଅଳ୍ପ କେତୋଟି ଜଳାଶୟରେ ପଦ୍ମଫୁଲ ରଖି ବିକ୍ରି କରୁଥିଲେ । ପରେ ସେ ଫୁଲ ବିକ୍ରି ବଢୁଥିବାର ଦେଖି ବହୁତଗୁଡ଼ିଏ ଜଳାଶୟ ସୃଷ୍ଟି କଲେ କୃତ୍ରିମ ଉପାୟରେ ଏବଂ ସେହି ଜଳାଶୟଗୁଡ଼ିକରେ ପଦ୍ମଫୁଲ ଚାଷ କଲେ । ଏହି ଜଳାଶୟଗୁଡ଼ିକ ଭିନ୍ନ ଭିନ୍ନ ନାମରେ ନାମିତ କଲେ । ସେଗୁଡ଼ିକ ବିଷୟରେ କିଛି ସୂଚନା ଏହି ଆଲେଖ୍ୟରେ ।

୧) ମନେଟ୍ ହ୍ରଦ (Monet's Lake)– କ୍ଲାଉଡ୍ ମନେଟ୍ ନାମକ ଫ୍ରାନସ୍‌ର ଜଣେ ବିଖ୍ୟାତ ବ୍ୟକ୍ତିଙ୍କ ନାମରେ ଏହି ଜଳାଶୟର ନାମ ଦିଆଯାଇଛି । ଅଷ୍ଟ୍ରେଲିଆର ଏହି ଉଦ୍ୟାନଟି ତାଙ୍କ ଉଦ୍ୟାନ ଅନୁକରଣରେ ତିଆରି ହୋଇଛି । ଏହି ଜଳ ଉଦ୍ୟାନରେ ୧୦ଟି ସେତୁ ଓ ୯ଟି ଦ୍ୱୀପ ଅଛି । ଏହି ଉଦ୍ୟାନରେ ୧୧ ମିଲିୟନ୍ ଲିଟର ପାଣି ଓ ୭୦ ପ୍ରକାର ପଦ୍ମଫୁଲ ଅଛି । ଏହା ଏହି ଉଦ୍ୟାନର ସବୁଠାରୁ ବଡ଼ ଜଳାଶୟ । Olga Lotus (ଓଲଗା ପଦ୍ମ)– ଏହା ଗୋଟିଏ ସୁନ୍ଦର ଗୋଲାପି ପଦ୍ମ । ଏହି ପଦ୍ମ ୨୦୧୫ରେ ଫୁଟିଲା ପ୍ରଥମ କରି । ଓଲଗା ବୋଲି ଜଣେ ଉଦ୍ଭିଦବିତ୍ ଜାପାନ୍‌ରେ ୨୦୦୦ ବର୍ଷର ପଦ୍ମଫୁଲର ମଞ୍ଜି ମାଟି ତଳୁ ପାଇ ଫୁଲ ଫୁଟାଇବାକୁ କ୍ଷମ ହେଲେ । କୁହାଯାଏ ଯେ ଏହା ପୃଥିବୀରେ ସବୁଠାରୁ ପୁରାତନ ପଦ୍ମବୀଜ ।



୨) ପଦ୍ମହ୍ରଦ– ଏହା ଦ୍ୱିତୀୟ ବୃହତ୍ତମ ହ୍ରଦ । ଏଥିରେ ସବୁଠାରୁ ବେଶୀ ପ୍ରକାରର ଫୁଲ ଫୁଟିଥାଏ । ପ୍ରତିବର୍ଷ ଏଥିରେ ୧୦,୦୦୦ ପଦ୍ମଫୁଲ ପ୍ରସ୍ଫୁଟିତ ହୋଇ ହ୍ରଦର ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଏ ।

ଜ୍ୟାଣ୍ଟ୍ ଆମାଜନ୍ ଲିଲି (Giant Lily)– ଏହାକୁ (Victoria Cruziana) ଭିକ୍ଟୋରିଆ କ୍ରୁଜିଆନା ବୋଲି କହନ୍ତି । ଏହି ପଦ୍ମ ରାଣୀ ଭିକ୍ଟୋରିଆ ଆଣ୍ଡ୍ରେସ୍ ସାଣ୍ଟାକ୍ରୁଜ୍‌ଙ୍କ ନାମରେ ନାମିତ ।

ଏହି ଅସାଧାରଣ ପଦ୍ମଫୁଲ ଦକ୍ଷିଣ ଆମେରିକାର ଆମାଜନ୍ ନଦୀ ପାଖରେ ହୋଇଥାଏ । ଏହା ସେପ୍ଟେମ୍ବରରୁ ଜାନୁଆରୀ ମଧ୍ୟରେ ଫୁଟିଥାଏ । ଫୁଲର ଆକାର ୧.୭ ମିଟର ପର୍ଯ୍ୟନ୍ତ ହୁଏ । ସକାଳେ ଫୁଲ ଫୁଟିବାବେଳେ ରଙ୍ଗ ଧଳା । ରାତିରେ ଫୁଲର ରଙ୍ଗ ଗାଢ଼ ଗୋଲାପି ହୁଏ । ଦିନରେ ଧଳା ଥିବାବେଳେ ଏହାକୁ ସ୍ତ୍ରୀ ଫୁଲ ଓ ରାତିରେ ପୁରୁଷ ଫୁଲ ବୋଲି

ଧରାଯାଏ । ଫୁଲର ରଙ୍ଗ ଠିକ୍ ସପୁରୀ ପରି । ଏତେବଡ଼ ସୁନ୍ଦର ଫୁଲଟି ଦୁଇଦିନ ମାତ୍ର ରହେ ।

ଏହି ଫୁଲ ପତ୍ରର ନିମ୍ନ ଭାଗରେ କଣ୍ଟା ପରି ଥାଏ । ହାତରେ ଫୋଡ଼ି ହୋଇଯାଏ । ସେହି ପତ୍ର ଉପରେ ଶିଶୁକୁ ରଖିଦେଲେ ମଧ୍ୟ ପତ୍ରଟି ବୁଡ଼ିଯାଏ ନାହିଁ ବୋଲି ଦର୍ଶକଙ୍କୁ ସୂଚନା ଦିଆଯାଇଛି ।

କୁମ୍ଭୀର ପଦ୍ମ (Crocodile Plant)– ଏହା ବଡ଼ ଆକାରର ଫୁଲ । ଏହି ଫୁଲର ପତ୍ରର ଉପର କୁମ୍ଭୀର ଚମଡ଼ା ପରି ଦେଖାଯାଏ ଓ ମୁନିଆ କଣ୍ଟାରେ ପୂର୍ଣ୍ଣ ଥାଏ । ଫୁଲ ବେଶୀ ବଡ଼ ନୁହେଁ, କିନ୍ତୁ ରଙ୍ଗ ସୁନ୍ଦର ବାଇଗଣି ରଙ୍ଗର ।

ସଂରକ୍ଷିତ ଘର (Rare Plant Parillian) – ଏହା ଗୋଟିଏ କାଚନିର୍ମିତ ଘର । ଘରଟିର ଭିତର ତାପମାତ୍ରାକୁ ଫୁଲ ବଢ଼ିବା ପାଇଁ ଉପଯୁକ୍ତ କରାଯାଇଥାଏ (ସବୁଜ ଗୃହ) । ଏହା ମଧ୍ୟରେ ନୀଳପଦ୍ମ, ବଡ଼ ଆକାରର ଗୋଲାପି ପଦ୍ମ ଏବଂ କୁମ୍ଭୀର ପରି ଦିଶୁଥିବା ପଦ୍ମଫୁଲ ଓ ପତ୍ର ରଖାଯାଇଛି । ଏହି ସବୁ ଅସାଧାରଣ ପଦ୍ମ ସବୁ ଭିନ୍ନ ଭିନ୍ନ ଦେଶରୁ ଅଣାଯାଇ ରଖାଯାଇଛି । ନୀଳପଦ୍ମ ଇଜିପ୍ଟର ନୀଳନଦୀ କୂଳରେ ଦେଖାଯାଏ । ସେଥିପାଇଁ ବୋଧହୁଏ ଏହାକୁ 'ନୀଳପଦ୍ମ' କୁହାଯାଏ । ରଙ୍ଗ ମଧ୍ୟ ନୀଳ ।

ଉଦ୍ୟାନର ସଂଗ୍ରହାଳୟରେ ପଦ୍ମମଞ୍ଜିରୁ ତିଆରି ସୁନ୍ଦର ହାର, ଘର ସଜାଇବା ଜିନିଷ ରଖାଯାଇଛି । ଏଠାକାର ଅଧିକାଂଶ ଅଧିବାସୀ ପଦ୍ମମଞ୍ଜି କିଣିକରି ନେଉଥାନ୍ତି; କିନ୍ତୁ ମୋତେ ସବୁଠାରୁ ଆଶ୍ଚର୍ଯ୍ୟ ଲାଗିଲା ପଦ୍ମମଞ୍ଜି ଓ ପତ୍ରରୁ ତିଆରି କରାଯାଇଥିବା ଚା' । ଏହି ଚା'ଗୁଣ୍ଡର ମୂଲ୍ୟ ସାଧାରଣ ଚା'ଠାରୁ ବହୁତ ବେଶୀ ।

ସେଠାରୁ ଫେରିବା ସମୟରେ ମୋ ମନରେ ଆସୁଥାଏ ଯେ ଜାପାନରେ ବାହାରିଥିବା ପଦ୍ମମଞ୍ଜି ୨୦୦୦ ବର୍ଷ ତଳର । ତାକୁ କିପରି ପୃଥିବୀର ସବୁଠାରୁ ପୁରାତନ ବୋଲି ଧରାଯିବ । ତ୍ରେତୟା ଯୁଗରେ ପ୍ରଭୁ ରାମଚନ୍ଦ୍ର ଯେତେବେଳେ ସୀତାଙ୍କୁ ଉଦ୍ଧାର ପାଇଁ ଦେବୀଙ୍କୁ ୧୦୮ ପଦ୍ମ ଦେଇ ପୂଜା କରୁଥିଲେ, ସେତେବେଳେ ଗୋଟିଏ କମ୍ ହେବାରୁ ସେ ପଦ୍ମ ପରି ସୁନ୍ଦର ଆଖି ବାହାର କରି ପୂଜା କରିବାକୁ ଉଦ୍ୟତ ହେବାରୁ ଦେବୀ ବରଦାନ କରିଥିଲେ । ସେଥିପାଇଁ ପ୍ରଭୁ ରାମଙ୍କୁ 'ରାଜୀବଲୋଚନ' କୁହାଯାଏ ।

ମହାଲକ୍ଷ୍ମୀ ସମୁଦ୍ରରୁ ଉଦ୍ଭବ ହେବାବେଳେ ପଦ୍ମାସୀନା ହୋଇ ବାହାରିଥିଲେ । ପଦ୍ମଫୁଲ ଆମ ଦେଶରେ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଏକ ପବିତ୍ର ପୁଷ୍ପ । କେତେ କବି, କେତେ ସାହିତ୍ୟିକ ଏହି ପୁଷ୍ପର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛନ୍ତି । ଏବେ ମଧ୍ୟ ମାର୍ଗଶୀର ମାସରେ ପଦ୍ମ ନ ପାଇଲେ ପଦ୍ମଫୁଲର ଚିତା ଲେଖି କମଳାଙ୍କୁ ପୂଜା କରାଯାଏ । ଆମର ଗ୍ରାମାଞ୍ଚଳରେ ଜଳାଶୟମାନଙ୍କରେ କଇଁ, ପଦ୍ମଫୁଲ ଫୁଟିଥାଏ । କେହି କେବେ ସେହି ଜଳାଶୟଗୁଡ଼ିକୁ ପରିଷ୍କାର କରି ଫୁଲର ସଂଖ୍ୟା ବୃଦ୍ଧି ପାଇଁ ଚେଷ୍ଟା କରନ୍ତି ନାହିଁ । ଜଳାଶୟଗୁଡ଼ିକ ପୋତି ଗୃହନିର୍ମାଣ କିମ୍ବା ମାଛଚାଷ କରିବାକୁ ଉଚିତ୍ ମନେକରନ୍ତି; ଅଥଚ ପଦ୍ମ ଆମ ଦେଶର ଜାତୀୟ ପୁଷ୍ପ ।

ଅଷ୍ଟ୍ରେଲିଆରୁ ଫେରିବା ପରେ ଅନେକ ସମୟରେ ଭାବେ– ଆମ ଓଡ଼ିଶାରେ ନନ୍ଦନକାନନରେ ବଡ଼ ହ୍ରଦ ଅଛି, ସେଥିରେ ପଦ୍ମଫୁଲ ଲଗାଗଲେ ଜଳାଶୟର ସୌନ୍ଦର୍ଯ୍ୟ କେତେ ବୃଦ୍ଧି ହୁଅନ୍ତା । ଯେତେ ଦର୍ଶକ ନନ୍ଦନକାନନକୁ ଆସୁଛନ୍ତି, ସେମାନେ ନିଶ୍ଚୟ ମୁଗ୍ଧ ହୁଅନ୍ତେ ।

*ବାଙ୍କିସାହି, କଟକ- ୭୫୩୦୦୯*

# ଭାବି ଦେଖନ୍ତୁ



ଯୁଗ ଦୌଡ଼ୁଛି ଏବଂ ଯୁଗ ସାଙ୍ଗରେ ଦୌଡ଼ୁଛନ୍ତି ଆମ ଯୁବପିଢ଼ି । ଇ-ବୁକସ୍, ଇ-ମେଲ୍, ସେଲ୍‌ଫି, ଫେସ୍‌ବୁକ୍, ଟ୍ୱିଟର୍, ହ୍ୱାଟସ୍ ଅପ୍, ଡ୍ରୋନ୍, ରୋବୋଟ୍ ଇତ୍ୟାଦି ଇତ୍ୟାଦି ଏ ଯୁବପିଢ଼ିକୁ ଦୌଡ଼ିବାରେ ସାହାଯ୍ୟ କରୁଛନ୍ତି ।

ସତକଥା– ପିଲାମାନେ, ଯୁବକମାନେ ତ ଦୌଡ଼ିବା ଦରକାର, ତା' ନ ହେଲେ ନୂତନ ଜ୍ଞାନକୌଶଳ ଉପଯୋଗ ହେବ କେମିତି ? ଏ ସମୟ ସେମାନଙ୍କର,ଏ ବୟସ ସେମାନଙ୍କର । ତେଣୁ ଉନ୍ମାଦନା, ମତୁଆଲା ହେବାର କଥା । ଯାହା ଚାହିଁବେ, ତା' କରିପାରିବେ । ଭୁଲ୍ କରିବେ, ଠିକ୍ କରିବେ, ସଜାଡ଼ି ହେବେ । ତାଙ୍କ ପଛରେ ଶିଶୁମାନେ ବି ତାଙ୍କୁ ଅନୁସରଣ କରିବେ– ଏହା ହିଁ ତ ଯୁଗସମୂହର ବାର୍ତ୍ତା । ଭାଙ୍ଗିବେ, ଗଢ଼ିବେ ସେମାନେ ।

ଦୁଃଖର କଥା, ସେମାନଙ୍କର ଏ ଯେଉଁ ଉନ୍ମାଦନା ସମାଜ ପାଇଁ ବିପଜ୍ଜନକ ହୋଇଯାଉଛି– ତାହା ହିଁ ମୋର କହିବାର କଥା ଯୁବପିଢ଼ିଙ୍କର ମୋବାଇଲ୍ ଓ ସେଲ୍‌ଫି ବ୍ୟବହାରକୁ ନେଇ । ରାସ୍ତାଘାଟରେ ଗଲାବେଳେ କାନ୍ଧକୁ ଜାକି, କାନରେ ମୋବାଇଲ୍‌କୁ ଲଗାଇ ଅନ୍ୟମନସ୍କ ହେବାରୁ ଅନେକ ଦୁର୍ଘଟଣା ଘଟୁଛି । କାର୍‌ରେ ଗଲାବେଳେ ମଧ୍ୟ ସେୟା । ତା'ପରେ ମୋବାଇଲ୍‌ରେ ଫେସ୍‌ବୁକ୍, ହ୍ୱାଟସ୍‌ଆପ୍ ଜରିଆରେ ନାନା ଅଶ୍ଳୀଳ ଫଟୋ ପଠାଇବା, ଚିଠିପତ୍ର ଦେବାଦ୍ୱାରା ସମାଜରେ ବିଶୃଙ୍ଖଳା ସୃଷ୍ଟି ହେଉଛି । ଯୁବକ-ଯୁବତୀ ବିଭ୍ରାନ୍ତ ହୋଇ ଆତ୍ମହତ୍ୟା କରୁଛନ୍ତି ବା ଯୁବତୀମାନେ ନିର୍ଯ୍ୟାତିତା ଭାବରେ କାଳ କାଟୁଛନ୍ତି । ସମାଜରେ ଆମେ ଏ ଖବର ନିତି ପଢୁଛେ । କେତେ କେତେ ଯୁବତୀ ଏ ଫେସ୍‌ବୁକ୍ ଓ ହ୍ୱାଟସ୍‌ଆପ୍‌ରେ ବନ୍ଧୁତା କରି ଅସୁବିଧାରେ ପଡୁଛନ୍ତି ।

ପୁଣି ଏବେ ସେଲ୍‌ଫି ଆହୁରି ମତୁଆଲା କରିଛି ଯୁବପିଢ଼ିଙ୍କୁ । ବିପଜ୍ଜନକ ସ୍ଥାନରେ ଠିଆ ହୋଇ ସେଲ୍‌ଫି ନେଉଛନ୍ତି । ସେଥିରୁ ସେମାନଙ୍କୁ କି ଆନନ୍ଦ ମିଳୁଛି, ଭଗବାନ ଜାଣନ୍ତି । ପାଣି ଭିତରେ, ପୋଲ ଉପରେ, ଛାତ ଉପରେ ଠିଆ ହୋଇ ସେଲ୍‌ଫି ନେଉଛନ୍ତି । ଏହାଦ୍ୱାରା କ'ଣ ହେଉଛି ଓ ହେବ, ସେମାନେ ଭଲ କରି ଜାଣନ୍ତି । ତଥାପି ଜୀବନକୁ ପାଣି ଛଡ଼େଇ ଏଭଳି ବିପଜ୍ଜନକ ଅବସ୍ଥାରେ ଫଟୋ ନେଇ ମୃତ୍ୟୁକୁ ବରଣ କରିବା ଏବଂ ଏଥିପାଇଁ ସରକାରଙ୍କୁ ଦୋଷ ଦେବା, ସମାଜକୁ ଦୋଷ ଦେବା– ଏ ସବୁ କେତେଦୂର ସମୀଚୀନ ? ସମାଜ କାହିଁକି କଟକଣା ଲଗାଉନି ? ସରକାର କାହିଁକି ଦୃଷ୍ଟି ଦେଉନାହାନ୍ତି ? –ଏ ସବୁ ଦୋଷାରୋପ କରିବା କ'ଣ ଉଚିତ ? ମନଇଚ୍ଛା ସେମାନେ ଯେଉଁଠି ପାରେ ସେଇଠି ସେଲ୍‌ଫି ନେଉଛନ୍ତି । ତାଙ୍କୁ କିଏ ରୋକିବ ? ଏଥିପାଇଁ କେତେ ଜାଗାରେ ସରକାର ସତର୍କତାମୂଳକ ପଦକ୍ଷେପ ନେଇପାରିବେ ?

ଏବେ ଗୋଟିଏ ଘଟଣାରେ ଅଟୋ ସାଙ୍ଗରେ ଗୋଟିଏ ଦୁଇଚକିଆ ଯାନ ମାଡ଼ ହୋଇଯିବାରୁ ସମସ୍ତେ ସେଇଠି ମୃତ୍ୟୁବରଣ କଲେ । ୨ ବର୍ଷର ପିଲାଟିକୁ ଛାଡ଼ି ମା' ଟିଏ ଚାଲିଗଲା । ସେ ନିଃସହାୟ ପିଲାଟିର ଯେଉଁ କାନ୍ଦଣା, ତା'କୁ କିଏ ବରଦାସ୍ତ କରିବ ? କାହାର ଦୋଷ ? ସମାଜ ଏଥିପାଇଁ କେତେ ସତର୍କ ରହିବ ?

ଯୁବପିଢ଼ି ବିଭ୍ରାନ୍ତ ହେବାରୁ ସମାଜ ବିଭ୍ରାନ୍ତ

ହେଉଛି, କେତେ ଯେ କ୍ଷତି ହେଉଛି, ତା'ର କଳନା ନାହିଁ । ଗୋଟେ ଗୋଟେ ପରିବାର ଭୁଷୁଡ଼ି ପଡୁଛି । ରୋଜଗାରକ୍ଷମ ପିତାମାତାଙ୍କର ମୃତ୍ୟୁ ପରିବାକୁ ଧୂଳିସାତ୍ କରିଦେଉଛି ।

ଆଜିର ଯୁବପିଢ଼ି ନୀତିନିୟମକୁ ପସନ୍ଦ କରୁନାହାନ୍ତି । ଉଦ୍‌ଭ୍ରାନ୍ତ ଓ ଉଦ୍ଦାମତା ସେମାନଙ୍କୁ କୁପଥକୁ ନେଉଛି । ପିଲାମାନଙ୍କୁ ନେଇ ମା'ବାପାମାନେ ଚିନ୍ତିତ । ଦୂରକୁ ଯାଉଥିବା ପିଲାମାନେ ଯେ ଭଲରେ ଘରକୁ ଫେରିବେ– ଏ ଚିନ୍ତା ଆଜିକାଲି ସବୁ ପିତାମାତାଙ୍କୁ ଚିନ୍ତିତ କରୁଛି ।

ଜାଣିବା କଥା ଯେ ନିୟମ ସେଇମାନଙ୍କ ପାଇଁ ତିଆରି ହୋଇଛି । ନୂତନ ଜ୍ଞାନକୌଶଳ ସେମାନଙ୍କୁ ଯୋଗାଇ ଦିଆଯାଉଛି । ତେଣୁ ଜ୍ଞାନକୌଶଳର ଉପଯୋଗ କରିବାକୁ ହେଲେ ନିୟମକୁ ଧରିବାକୁ ହେବ । ସବୁର ଉପକାର, ଅପକାର ରହିଛି । ତେଣୁ ସେହି ଅନୁସାରେ ଯୁବପିଢ଼ି ଚିନ୍ତା କରି ତାହାର ଉପଯୋଗ କଲେ ଅପକାର ଦିଗଟି ବାରି ହୋଇପଡ଼ିବ । ସମାଜ କ୍ଷତିଗ୍ରସ୍ତ ହେବାରୁ ରକ୍ଷା ପାଇଯିବ । ମୋବାଇଲ୍ ଯୁଗର ଉଦ୍‌ଭ୍ରାନ୍ତ ଯୁବ-ସମାଜ ସମାଜର ଉପକାରରେ ସେମାନଙ୍କର ଉଦ୍ଦାମତା, ଉନ୍ମାଦନାକୁ ଲଗାଇଲେ ସମାଜ, ଦେଶ ଓ ରାଜ୍ୟ, ପରିବାର– ସବୁ କିଛି ସଜାଡ଼ି ହୋଇଯିବ ଓ ଆହୁରି କେତେ ନୂତନ ଜ୍ଞାନକୌଶଳ ସୃଷ୍ଟି ହୋଇପାରିବ । ତାହା ହିଁ ସମାଜକୁ ଦିଗ୍‌ଦର୍ଶନ ଦେବ ।

**ଅନସୂୟା ନନ୍ଦ**

---

# ମୁଁ ତ ତୋର ସାନ ଭାଇ

ଶ୍ରୀ ଶ୍ୟାମସୁନ୍ଦର ବିଶ୍ୱାଳ



ତୁ ହେଲେ ନଡ଼ିଆ ମୁଁ ହେବି କତା
ତୁ ହେଲେ ନୟନ ମୁଁ ହେବି ପତା
ମୁଁ ତ ତୋର ସାନଭାଇ,
ରାକ୍ଷୀ ମୋ ହାତରେ ବାନ୍ଧୁଥିବୁ ଅପା
ସେନେହର ଗାନ ଗାଇ ।
ତୋ ଅନ୍ତରୁ ଯେଉଁ ମମତା ଝରେ
ଜୀବନକୁ ମୋର ମଧୁର କରେ
ତୋହରି ଆଶିଷ ନେଇ
ଭୁଲି କି ପାରିବି ତୋ ଭାବକୁ ଅପା
ଏକାପେଟେ ଥାନ ପାଇ ।
ଅପା, ତୁ ମୋ ପାଇଁ ମନ୍ଦିର ଯାଉ
ମଂଗଳ ମନାସି ଭୋଗ ଲଗାଉ
ଯେତେ ବାଧାବିଘ୍ନ ଥାଇ
ଯେଉଁଠି ଥିଲେ ବି ଧାଇଁ ଆସିବି ମୁଁ
ତୋ ମାନ ସମ୍ମାନ ପାଇଁ ।
ମୁଁ ପରା ତୋ ଭାଇ !

*ପ୍ରାଥମିକ ଶିକ୍ଷକ ଶିକ୍ଷା ପ୍ରତିଷ୍ଠାନ, ବଲାଂଗୀର*

---

**ସାଧାରଣଜ୍ଞାନ ପରୀକ୍ଷାର ଉତ୍ତର**

୧) ବାଥୋମିଟର, ୨) ସିଆଚେନ୍, ୩) ୧୯୯୬ ମସିହା, ୪) ସାର୍ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍, ୫) ଗଲ୍‌ଫ, ୬) ଦକ୍ଷିଣ ଆଫ୍ରିକା, କିମ୍ବରଲୀ ସହର, ୭) ମନୋଜ ଦାସ, ସରସ୍ୱତୀ ସମ୍ମାନ, ୮) ଇଉକାଲିପଟସ୍, ୯) ପାଣ୍ଡା, ୧୦) Fully Integrated Robotised Engine.

## ଛବି ଓ ଗୀତ

ଶ୍ରୀ କାଞ୍ଚ ନାରାୟଣ ମହାନ୍ତି

# ଆନିମେସନ୍ ଚଳଚ୍ଚିତ୍ର-- 'ଦ ସିକ୍ରେଟ୍ ଲାଇଫ୍ ଅଫ୍ ପେଟସ୍'

ଆଜିକାଲି ଦେଖିବାକୁ ମିଳୁଛି କାର୍ଟୁନ୍ ଚଳଚ୍ଚିତ୍ର ଦେଖିବା ପାଇଁ ପିଲାମାନେ ଭୋକଶୋଷ ଭୁଲିଯାଉଛନ୍ତି । ସ୍କୁଲରୁ ଫେରୁଥିବା ପିଲା ଘରେ ତା' ବ୍ୟାଗ୍ ଫୋପାଡ଼ି ଦେଇ ଆଗ ଧରି ବସିଯାଉଛି ଟିଭି ରିମୋଟ୍ । ଖାଇବା ପାଇଁ ମା' ଡାକିଲେ ବି ସେ ଉଠୁନାହିଁ । ଟଭି ବନ୍ଦ କରିଦେଲେ ପିଲାର କାନ୍ଦ ଦେଖିବ କଣ ! ଗୋଡ଼ ବାଡ଼େଇ ସେ ନିଜ ଚ୍ୟାନେଲ୍ ଦେଖିବାକୁ ପସନ୍ଦ କରୁଛି । କାର୍ଟୁନ୍ ପାଇଁ ଟିଭିରେ ପାଞ୍ଚ ଛଅଟା ଚ୍ୟାନେଲ୍ ରହିଛି ।

ତେବେ 'ପୋଷା ଜନ୍ତୁମାନଙ୍କର ଅଜଣା ଜୀବନକଥା' ଉପରେ ଆଧାରିତ ଛବିଟି ପ୍ରଥମେ ଆମେରିକାରେ ମୁକ୍ତିଲାଭ କଲା । ଦି' ସପ୍ତାହ ମଧ୍ୟରେ ଏହା ଆଶାତୀତ ବ୍ୟବସାୟ କରିଛି । ଏହା ସମ୍ପର୍କରେ ଚଳଚ୍ଚିତ୍ର ସମୀକ୍ଷକମାନଙ୍କର ମତ ହେଲା– ଅତୀତର ସବୁଠାରୁ ଅଧିକ ବ୍ୟବସାୟ କରିଥିବା ଛବିର ରେକର୍ଡ ଭାଙ୍ଗିବ 'ଦି ସିକ୍ରେଟ୍ ଲାଇଫ୍ ଅଫ୍ ପେଟ୍ସ' ।

ଚଳଚ୍ଚିତ୍ରଟି ତିନି ମାସ ମଧ୍ୟରେ ୬୦ଟି ଦେଶରେ ପ୍ରଦର୍ଶିତ ହେବ । ସେ ଦେଶଗୁଡ଼ିକ ହେଲା ଭାରତ– ପାକିସ୍ତାନ୍, ତ୍ରିନିଦାଦ୍– ଏବଂ ଆହୁରି ଅନେକ ।

ଏହାର କାହାଣୀ ଲେଖକ ହେଲେ– ବ୍ରିୟାନ୍ ଲିଞ୍ଚ୍, ସିଙ୍କୋ ପଲ୍ ଏବଂ କେନ୍ ଡାଉରିଓ । ଏହାର ନିର୍ଦ୍ଦେଶକ– କ୍ରିଶ୍ ରେନାଉଦ୍ ଏବଂ ୟାରୋ ଚେନି ।



କ୍ରିଶ୍ ରେନାଉଦ୍,



ୟାରୋ ଚେନି

ଚଳଚ୍ଚିତ୍ରଟି କେବଳ ପିଲାମାନଙ୍କ ପାଇଁ ନୁହେଁ, ବୟସ୍କମାନଙ୍କୁ ମଧ୍ୟ ଆମୋଦ ପ୍ରଦାନ କରୁଛି । ଏହା ଏକ ହାସ୍ୟରସାତ୍ମକ ଆମୋଦ ଛବି, ଯାହା ଆୟାରଲ୍ୟାଣ୍ଡ୍ ଏବଂ ୟୁ.କେ.ରେ ଭଲ ବ୍ୟବସାୟ କରିଛି ।

ମୋଗଲି ସହ ଜଙ୍ଗଲ ଜୀବମାନଙ୍କର ଆପଣାପଣ ଦେଖିବାରେ ଛୋଟ ଛୋଟ ପିଲାମାନେ କେତେ ଆନନ୍ଦିତ ହେଲେ ! ନୀଲ୍ ସେଠ୍ ଭଳି ଛୋଟ ପିଲା ମାତ୍ର ଆଠ



କେନ୍ ଡାଉରିଓ,




ସିଙ୍କୋ ପଲ୍,



ବ୍ରିୟାନ୍ ଲିଞ୍ଚ୍,

ବର୍ଷ ବୟସରେ ଏଭଳି ଏକ ସୁଯୋଗ ପାଇଥିଲା, ଯାହା ତା'ର ଭବିଷ୍ୟତ ଜୀବନ ପାଇଁ ରାସ୍ତା ପରିଷ୍କାର କରିସାରିଛି ।

କାର୍ଟୁନ୍ ଛବି ବା ଆନିମେସନ୍ ଆଜି ପିଲାମାନଙ୍କ ଠାରୁ ବୟସ୍କମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ପ୍ରିୟ ହୋଇପାରିଛି ।

## ବାୟୋପିକ୍ ଛବି ନିର୍ମାଣ ବଲିଉଡ୍‌ରେ ବଢ଼ିଚାଲିଛି

ଆମ ବଲିଉଡ୍ ଏମିତି ଏକ ଶିଳ୍ପ, ଯଦି ସେମାନଙ୍କର ମୁଣ୍ଡରେ ନିର୍ଦ୍ଦିଷ୍ଟ ପ୍ରକାର ଛବି ଭଲ ଚାଲିଛି ବୋଲି ବୁଝିଗଲେ, ତେବେ ସବୁ ନିର୍ମାଣ ସେହି ଦିଗରେ ମୁହାଁଇବ ।

ମିଳନ, ବିଷାଦ, ଫାଇଟିଂ, ଆକ୍‌ସନ୍, ଭୂତ ଚଳଚ୍ଚିତ୍ର, ପୁନର୍ଜନ୍ମ ଉପରେ ସିନେମା, ତା' ପରେ ହାସ୍ୟ ଏବଂ ଆସିଛି ଜୀବନୀ ଉପରେ ଛବି ନିର୍ମାଣର ସ୍ରୋତ ।

ଏହି ଧାରାରେ ଧାବକ ମିଲ୍‌ଖା ସିଂହ, ସରବଜିତ, ନିରଜା ଭାନ୍‌ନୋଟ୍, ଗାମା ହିଲ୍, କଣ୍ଠଶିଳ୍ପୀ କିଶୋର କୁମାର, ଅରୁଣ ଗାଓ୍ୱଲି, ସଂଜୟ ଦତ୍ତ, ସହିଦ୍ ଆଜମୀ, ମୋହନ୍ କା ମାନ୍, ବାଜିରାଓ ମସ୍ତାନି, ମାରୀକମ୍, ଆଜାରୁଦ୍ଦିନ୍, ମହେନ୍ଦ୍ର ସିଂ ଧୋନି, ସିଲକ୍ ସ୍ମିତା ଏବଂ ଆହୁରି ଅନେକଙ୍କ ଉପରେ ଛବି ନିର୍ମାଣ ଚାଲିଛି ।

ପ୍ରଥମ ଭାରତୀୟ ମହାକାଶଚାରୀ ରାକେଶ ଶର୍ମାଙ୍କ ଉପରେ ବାୟୋପିକ୍ ନିର୍ମାଣ ପାଇଁ ଚର୍ଚ୍ଚା ଚାଲିଛି, ପାଣ୍ଡୁଲିପି ଲେଖା ସରିଗଲାଣି । ଏଥିପାଇଁ କଳାକାର ଚୟନ ଆରମ୍ଭ ହୋଇଛି । ଶୁଣିବାକୁ ମିଳୁଛି ଯେ ମିଷ୍ଟର ପରଫେକ୍‌ସନିଷ୍ଟ୍ ଅମୀର ଖାଁଙ୍କୁ ଏହି ଭୂମିକାରେ ନିଆଯିବ ।

ଅମୀର ଖାଁ କୁହନ୍ତି– ସେ ଏପର୍ଯ୍ୟନ୍ତ ସେହି ଭୂମିକାରେ ଆସିବେ କି ନା ସ୍ଥିର କରିନାହାନ୍ତି । କେବଳ ସେ ଚଳଚ୍ଚିତ୍ରର ପାଣ୍ଡୁଲିପି ପାଇଛନ୍ତି । ଭଲ ଭାବରେ ପଢ଼ିସାରିବା ପରେ ଚରିତ୍ରର ଗଭୀରତା ଦେଖିସାରି ସେ ଅଭିନୟ ପାଇଁ ମତାମତ ଦେବେ, ତା' ପୂର୍ବରୁ ସିନେମାରେ ଅଭିନୟ ସମ୍ପର୍କରେ କିଛି କହିବା ଠିକ୍ ନୁହେଁ ।

ରାକେଶ ଶର୍ମା ଭାରତୀୟ ମହାକାଶ ବିଜ୍ଞାନୀ-ମାନଙ୍କ ମଧ୍ୟରେ ଜଣେ ଗଣ୍ୟ ବୈଜ୍ଞାନିକ ଏବଂ ବିଶ୍ୱ ସ୍ତରରେ ମହାକାଶ ବିଜ୍ଞାନରେ ସମ୍ମାନ ବୃଦ୍ଧି କରି ପାରିଛନ୍ତି ।

*ଆଶ୍ରମ, ଶ୍ରୀବିହାର କଲୋନୀ, କଟକ- ୭୫୩୦୦୮*

---



## ପୁସ୍ତକ ପରିଚୟ

**ଶିଶୁ ସାହିତ୍ୟରେ ଚିତ୍ରର ଭୂମିକା**-- ସଂଯୋଜକ- **ଡ. ମନୀନ୍ଦ୍ର ମହାନ୍ତି** ଏବଂ **ସଂପାଦନା ମଣ୍ଡଳୀ, ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା ପରିଷଦ,** ଭଦ୍ରକ । ମୂଲ୍ୟ- ୨୦୦ଟଙ୍କା ।

ଡିମେଇ ଆକାରର ଏହି ଉପାଦେୟ ପୁସ୍ତକଟି ଅନେକ ବିଶିଷ୍ଟ ଶିଶୁ ସାହିତ୍ୟିକଙ୍କର ରଚନାରେ ସମୃଦ୍ଧ ହୋଇଛି । ଓଡ଼ିଶା ଓ ଓଡ଼ିଶା ବାହାରର ଶିଶୁ ସାହିତ୍ୟିକମାନେ ମଧ ହିନ୍ଦୀ ଓ ଇଂରାଜୀରେ ତାଙ୍କର ସୃଷ୍ଟି ସନ୍ନିବେଶିତ କରିଛନ୍ତି । ଶିଶୁ ସାହିତ୍ୟରେ ଚିତ୍ରର ଭୂମିକା ବିଷୟରେ ଶିକ୍ଷଣୀୟ ତଥା ଓ ଭାଷା ଉପାଦେୟ ତଥ୍ୟ ଏଥିରେ ସନ୍ନିବେଶିତ । ପ୍ରଚ୍ଛଦଟି ରଂଗିନ୍ ଓ ଦୁଇଟି ଶିଶୁଙ୍କର ଚିତ୍ରିତ ବହିଟିଏ ପଢ଼ିବାର ଦୃଶ୍ୟ ଆକର୍ଷଣୀୟ । ପୁସ୍ତକଟି ପ୍ରଚାରିତ ହେଲେ ସଂପାଦନା-ମଣ୍ଡଳୀଙ୍କର ଶ୍ରମ ସାର୍ଥକ ହେବ ।

**ସପନ ଘର କେଡ଼େ ସୁନ୍ଦର**-- ଲେଖିକା- **ସୁଶ୍ରୀ ସବିତା ଭୋଇ,** ଦମକିପାଲି, ପାଟଣାଗଡ଼, ବଲାଙ୍ଗୀର- ୭୬୭୦୨୫, ମୂଲ୍ୟ- ୪୦ଟଙ୍କା ।

ପାଣି କିଏ ଶୋଷିଲା, ବିଲୁଆ ମାରିଲା ଛୁ, ଅନୁତପ୍ତ, ଅଚିହ୍ନା ବନ୍ଧୁ ଇତ୍ୟାଦି ୧୨ଟି ଶିଶୁ ଗଳ୍ପ ଏହି କ୍ରାଉନ୍ ଆକାରର ଶିଶୁ ଗଳ୍ପ ପୁସ୍ତକଟିରେ ସନ୍ନିବେଶିତ ହୋଇଛି । ପ୍ରତି ଗଳ୍ପରେ ଶିକ୍ଷଣୀୟ କଥାବସ୍ତୁ ସହିତ ଛୋଟ ଗଳ୍ପଗୁଡ଼ିକ ଚିତ୍ର ସହ ଆକର୍ଷଣୀୟ ହୋଇଛି । ପ୍ରଚ୍ଛଦଟି ରଙ୍ଗିନ୍ ହେବା ସହ ୩ଟି ଶିଶୁ ପରୀଙ୍କର ଆକାଶରେ ଘରଟିଏ ଧରି ଉଡ଼ିବାର ଚିତ୍ର ମନୋମୁଗ୍ଧକର । ପୁସ୍ତକଟି ଆଦୃତ ହେବାର ଆଶା ରଖୁଛୁ ।

**ଆଈବୁଢ଼ୀଙ୍କ କାହାଣୀ ପେଡ଼ି**-- ମୂଳ ଲେଖା- ସୁଧା ମୂର୍ତ୍ତି, ଅନୁବାଦ- ବସନ୍ତ କୁମାର ପାଳ, ଲୋଟସ୍ ବୁକସ୍, କେ-୪-୫୭୪- କଳିଙ୍ଗ ନଗର, ଭୁବନେଶ୍ୱର- ୭୫୧୦୧୯, ମୂଲ୍ୟ- ୯୬ ଟଙ୍କା

କାବେରୀ ଓ ଚୋର, ସବୁଠୁ ସୁଖୀ କିଏ, ଅଜବ କଙ୍କଡ଼ା ବିଛା, ରାଜଜେମାଙ୍କ ନୂଆ ପୋଷାକ, ପାଞ୍ଚ ଚାମଚ ଲୁଣ ଇତ୍ୟାଦି ୨୧ଟି ଶିଶୁ ଗଳ୍ପର ସମାହାର ହୋଇଛି ଏହି ଶିଶୁ ଗଳ୍ପ ପୁସ୍ତକରେ । ପ୍ରତି ଗଳ୍ପ ମଝିରେ ପୂରା ପୃଷ୍ଠାରେ ବଡ଼ ଚିତ୍ର ରହିଥିବାରୁ ଏହା ପିଲାଙ୍କୁ ଆନନ୍ଦ ଦେବାରେ ସହାୟକ ହେବ । ଗଳ୍ପଗୁଡ଼ିକ ମଧ୍ୟ ଶିକ୍ଷାପ୍ରଦ ଓ ସରଳ ।

ରଙ୍ଗିନ୍ ପ୍ରଚ୍ଛଦରେ ପିଲାଗୁଡ଼ିଏ ସହ ଆଈମା'ର ଚିତ୍ର ସୁଦୃଶ୍ୟ ହୋଇପାରିଛି । ପୁସ୍ତକଟି ଶିଶୁମାନଙ୍କ ଦ୍ୱାରା ଆଦୃତ ହେବାର ଆଶା ।

---

(୫୪ ପୃଷ୍ଠାର ଅବଶିଷ୍ଟାଂଶ)

-- ରିଲାଏନସ୍ ଫାଉଣ୍ଡେସନ୍‌ର ପ୍ରତିଷ୍ଠାତା ଅଧ୍ୟକ୍ଷା ନୀତା ଅମ୍ବାନୀ ଆନ୍ତର୍ଜାତିକ ଅଲମ୍ପିକ୍ କମିଟିର ସଦସ୍ୟା ମନୋନୀତ ।

୮।୮-- ପାକିସ୍ତାନରେ ଦକ୍ଷିଣ-ପଶ୍ଚିମ ବେଲୁଚିସ୍ତାନ ପ୍ରଦେଶରେ ଏକ ଡାକ୍ତରଖାନାରେ ବିସ୍ଫୋରଣ ହୋଇ ୭୦ଜଣ ମୃତ ଓ ୧୫୦ରୁ ଅଧିକ ଆହତ ।




୨୦। ୭-- ବିଶିଷ୍ଟ ଶିଶୁ ସାହିତ୍ୟିକ ରବୀନ୍ଦ୍ର ବିଶ୍ୱାଳଙ୍କର ୭୨ ବର୍ଷରେ ପରଲୋକ । ୪ ଦଶନ୍ଧିରୁ ଅଧିକ କାଳ ସେ ଶିଶୁ ସାହିତ୍ୟ ରଚନାରେ ବ୍ରତୀ ଥିଲେ ।

୨୧। ୭-- ନାଟ୍ୟଶିଳ୍ପୀ ସୁରେନ୍ଦ୍ରନାଥ ମହାନ୍ତିଙ୍କର ୯୦ବର୍ଷରେ ପରଲୋକ । ସେ ବେତାର, ମଞ୍ଚନାଟକ ସହ ଚଳଚ୍ଚିତ୍ରରେ ଅଭିନୟ କରି ଲୋକପ୍ରିୟ ହୋଇଥିଲେ ।

୨୬। ୭-- ଜ୍ଞାନପୀଠ ଓ ରମନ୍ ମାଗସେସ୍ ପୁରସ୍କାର ବିଜୟିନୀ ତଥା ପ୍ରଖ୍ୟାତ ସାହିତ୍ୟିକା ପଦ୍ମବିଭୂଷଣ ମହାଶ୍ୱେତା ଦେବୀଙ୍କର ୯୦ ବର୍ଷରେ ପରଲୋକ ।

୨୮। ୭-- ବିଶିଷ୍ଟ ତବଲା ବାଦକ ପଣ୍ଡିତ ଲଚ୍ଛୁ ମହାରାଜଙ୍କର ୭୨ ବର୍ଷରେ ପରଲୋକ । ସେ ବିଶ୍ୱ ସ୍ତରରେ ପ୍ରସିଦ୍ଧି ଲାଭ କରିଥିଲେ ।

୭। ୮-- ପୂର୍ବତନ ମନ୍ତ୍ରୀ ତଥା ସାଂସଦ ଜଗନ୍ନାଥ ମଲ୍ଲିକ୍‌ଙ୍କର ୮୨ ବର୍ଷରେ ପରଲୋକ ।

୯। ୮-- ବିଶିଷ୍ଟ ସ୍ତମ୍ଭକାର ତଥା ସାମ୍ବାଦିକ ବରେନ୍ଦ୍ର କୃଷ୍ଣ ଧଳଙ୍କର ୭୬ବର୍ଷରେ ପରଲୋକ । ସେ ୧୯୮୮ରେ 'ସାମ୍ବା' ଅନୁବାଦ ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ ।

୧୨। ୮-- ପୂର୍ବତନ ମୁଖ୍ୟ ଶାସନ ସଚିବ ସୁଧାଂଶୁ ମିଶ୍ରଙ୍କର ୭୬ବର୍ଷରେ ପରଲୋକ ।

୧୬। ୮-- ବିଶିଷ୍ଟ ବୈଜ୍ଞାନିକ ତଥା ଶିକ୍ଷାବିତ୍ ପ୍ରଫେସର ଜନାର୍ଦ୍ଦନ ନନ୍ଦଙ୍କର ୮୦ ବର୍ଷରେ ପରଲୋକ । ସେ ଭାରତୀୟ ଜାତୀୟ ବିଜ୍ଞାନ କଂଗ୍ରେସର ଉପସଭାପତି ଓ ଭାରତ ସରକାରଙ୍କର ଶକ୍ତି ମନ୍ତ୍ରଣାଳୟର ଉପଦେଷ୍ଟା ଥିଲେ ।

୧୮। ୮-- ବିଶିଷ୍ଟ ଅଭିନେତା, ନିର୍ଦ୍ଦେଶକ, ପ୍ରଯୋଜକ ତଥା ଚିତ୍ରନାଟ୍ୟ ଲେଖକ ଗୋବିନ୍ଦ ଚନ୍ଦ୍ର ତେଜଙ୍କର ୮୮ବର୍ଷରେ ପରଲୋକ ।

## ଶବ୍ଦଧନ୍ଦା ସେପ୍ଟେମ୍ବର-୨୦୧୬

ଶ୍ରୀ ଅମର କୁମାର ସିଂ

୧ । କାଗଜରେ ବା କାର୍ଡ଼ରେ ଘର କାଟି ଉତ୍ତର ଲେଖନ୍ତୁ ।
୨ । ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
୩ । ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
୪ । ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
୫ । ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
୬ । ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨।୯।୨୦୧୬
୭ । ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | ୨ | | ୩ | | ୪ | ✻ |
| ✻ | | ✻ | ୫ | | | ୬ |
| ୭ | ✻ | ୮ | | | ୯ | |
| | ୧୦ | ✻ | ୧୧ | | | ୧୨ |
| ୧୩ | | ୧୪ | | | | |
| | ୧୫ | | ✻ | ୧୬ | ✻ | |
| | ✻ | | ✻ | ୧୭ | | |

### ସୂଚନା

**ବାମରୁ ଡାହାଣ--** ୧ । ପରସ୍ପରରେ କଥାବାର୍ତ୍ତା (୬), ୫ । ସର୍ତ୍ତ (୨), ୮ । କଳ୍ପନା (୩), ୯ । ଚିହ୍ନ / କଳଙ୍କ (୨), ୧୧ । ଚୁଗୁଲି (୪), ୧୩ । ସଜନା ଗଛ / କଦଳୀ ଗଛ (୨), ୧୪ । ଶ୍ରୀକୃଷ୍ଣ (୪), ୧୫ । ଲେମ୍ବୁ ବିଶେଷ (୨), ୧୭ । ଫିକା ହଳଦିଆ ରଙ୍ଗ (୩) ।

**ଉପରୁ ତଳ--** ୨ । ବନ୍‌ଶୀକଣ୍ଟାରେ ଲାଗେ (୨), ୩ । ଘୋଡ଼ା ଗାଡ଼ିର ଚାଳକ (୪), ୪ । ନଦୀବିଶେଷ (୩), ୫। ସୁଗନ୍ଧ ତୈଳବିଶେଷ (୨), ୬ । କୌଶଳ (୨), ୭ । ପ୍ରଧାନ ଦେଉଳକୁ ଲାଗି ସମ୍ମୁଖରେ ଥିବା କ୍ଷୁଦ୍ର ଦେଉଳ / ନାଟ ମନ୍ଦିର (୫), ୧୦ । କେଶ /ମେଘ (୨), ୧୨ । ସୂର୍ଯ୍ୟ ଉତ୍ତର ବା ଦକ୍ଷିଣକୁ ଗତି କରିବାର ଶେଷସୀମା (୪), ୧୪ । ଆଚରଣ (୩), ୧୬ । ଜଡ଼ା (୨) ।

*--ଉଲୁଣ୍ଡା, ସୁବର୍ଣ୍ଣପୁର-୭୬୭୦୬୨*

---

**ଅଗଷ୍ଟମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧ । ମହାନଦୀ, ୩ । ସଡ଼କ, ୫ । ରୋଦନ, ୬ । ଧମନୀ, ୭ । ଜମକ, ୮ । ମଳୟ, ୯ । ତମସା, ୧୧ । ରମଜାନ, ୧୪ । କାମନା, ୧୫ । ଭଙ୍ଗୁର, ୧୬ । ଶରଣ, ୧୭ । ରାଳ ।

**ଉପରୁ ତଳ--** ୧ । ମଗଧ, ୨ । ନମନୀୟ, ୩ । ସରୋଜ, ୪ । କନକ, ୮ । ମସ୍‌କା, ୯ । ତରକା, ୧୦ । କମର, ୧୨ । ଜାଙ୍ଗୁଳ, ୧୩ । ନରକ, ୧୫ । ଭରା ।

---

**ଗତମାସର ଠିକ୍ ଉତ୍ତରଦାତା- ନିଶିକାନ୍ତ ବେହେରା,** ହିନ୍ଦୋଳ ରୋଡ, ଢେଙ୍କାନାଳ; **ରସାନନ୍ଦ ଘଡ଼େଇ,** ପୁଆଣିଆ, ନୟାଗଡ଼; **ଅନନ୍ତ ଚରଣ ପାଢ଼ୀ,** ଜେନାପୁର, ଯାଜପୁର ।

**ଏକ ଭୁଲ ଉତ୍ତର-- ଶାଶ୍ୱତୀ ଅର୍ଘ୍ୟରୂପା ସାହୁ ।**

# ପୃଥ୍ୱୀ କ୍ଷଣ-କ୍ଷଣକେ ଆନ

## ଓଡ଼ିଶା ଖବର

୧୯। ୭-- ଶ୍ରୀଜିଉଙ୍କ ନୀଳାଦ୍ରିବିଜେ ବିଭ୍ରାଟ ଘଟଣାରେ ୯ଜଣ ସେବକ ନିଲମ୍ବିତ ଓ ୬ଜଣ ଗିରଫ୍ ।

୨୦। ୭-- ଯାଜପୁର ଜିଲାର ନଗଡ଼ାଠାରେ ପୁଷ୍ଟିହୀନତା କାରଣରୁ ଶିଶୁ ମୃତ୍ୟୁ ଘଟଣା ଯୋଗୁଁ ୧୫ଟି ଜିଲାରେ ଅଙ୍ଗନବାଡ଼ି ଖୋଲିବାକୁ ନିର୍ଦ୍ଦେଶ ।

୨୧। ୭-- ରାଜ୍ୟରେ ଡେଙ୍ଗୁ ରୋଗର ପ୍ରାଦୁର୍ଭାବରେ ୧୮୬୨ଜଣ ଆକ୍ରାନ୍ତ ।

୨୪। ୭-- ଆର୍ଥିକ ଅନିୟମିତତା ଅଭିଯୋଗରେ ତ୍ରିପୁରା କ୍ୟାଡର୍‌ର ଆଇପିଏସ୍ ଅଫିସର ଜୟଦୀପ ନାୟକ ଗିରଫ ।

୨୬। ୧୭-- ରାଜ୍ୟର ବେସରକାରୀ ସ୍ତରରେ ପରିଚାଳିତ ଉଚ୍ଚ ବିଦ୍ୟାଳୟ, ସଂସ୍କୃତ ଟୋଲ୍, ଉଚ୍ଚ ପ୍ରାଥମିକ ତଥା ମଦ୍ରାସାର ଶିକ୍ଷକମାନଙ୍କର ଦରମା ବୃଦ୍ଧି ଓ ସୁରକ୍ଷା ପ୍ରଦାନ ପ୍ରସ୍ତାବକୁ ରାଜ୍ୟ ସରକାରଙ୍କର ଅନୁମୋଦନ ।

-- ସୁଶାନ୍ତ ଦାସ ଓଡ଼ିଶା ମାଧ୍ୟମିକ ଶିକ୍ଷା ବୋର୍ଡର ସଭାପତି ନିଯୁକ୍ତ ।

୯। ୮-- ପ୍ରାକୃତିକ ମୁହାଣ ଅବରୋଧ ଯୋଗୁଁ ଯମୁନା ନଦୀର ଗତିପଥ ପରିବର୍ତ୍ତନ ଏବଂ ନୂତନ ମୁହାଣ ସୃଷ୍ଟି । ସ୍ୱର୍ଗଦ୍ୱାର ସମ୍ମୁଖରେ ବେଳାଭୂମିକୁ ୮ଫୁଟ୍ ଗଭୀରତାରେ ସମୁଦ୍ର ଧୋଇ ଦେଇଛି ।

୧୨। ୮-- ଓଡ଼ିଆ ସରକାରୀ ଭାଷା ଆଇନ କାର୍ଯ୍ୟକାରୀ ହୋଇଛି ।

## ଭାରତ ଖବର

୧୮। ୭-- ବିଶ୍ୱ ଐତିହ୍ୟସ୍ଥଳ ତାଲିକାରେ ଭାରତର ଚଣ୍ଡିଗଡ଼ର କ୍ୟାପିଟାଲ କମ୍ପ୍ଲେକସ୍, ସିକିମ୍‌ର କାଞ୍ଚନଜଙ୍ଘା ଓ ନାଳନ୍ଦା ବିଶ୍ୱବିଦ୍ୟାଳୟର ଭଗ୍ନାବଶେଷ ଅନ୍ତର୍ଭୁକ୍ତ ।

୨୨। ୭-- ଭାରତୀୟ ବାୟୁସେନାର ଏକ ପରିବହନକାରୀ ବିମାନ ନିଖୋଜ । ଏଥିରେ ୨୯ଜଣ ଯାତ୍ରୀ ଥିଲେ ।

୨୭। ୭-- ଉତ୍ତରାଖଣ୍ଡର ପ୍ରମୁଖ ଧାମ ଗଙ୍ଗୋତ୍ରୀରେ ଗୋମୁଖର ଅଗ୍ରଭାଗ ହିମସ୍ଖଳନ ଯୋଗୁଁ ଭାସିଯାଇଛି ।

୨୮। ୭— ମାନବାଧିକାର କର୍ମୀ ବେଜଓ୍ୱାଡ଼ ୱିଲ୍‌ସନ୍ ଓ ଦକ୍ଷିଣ ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତଜ୍ଞ ଟି.ଏମ୍. କୃଷ୍ଣାଙ୍କୁ ୨୦୧୬ ପାଇଁ ରମନ୍ ମାଗ୍‌ସେସ୍ ପୁରସ୍କାର ପ୍ରଦାନ ।

୧। ୮-- ଗୁଜୁରାଟ ମୁଖ୍ୟମନ୍ତ୍ରୀ ପଦରୁ ଆନନ୍ଦିବେନ୍ ପଟେଲ୍‌ଙ୍କର ଇସ୍ତଫା ପ୍ରଦାନ । ମୁଖ୍ୟମନ୍ତ୍ରୀ ଭାବେ ବିଜୟ ରୂପାନି ଏବଂ ଉପମୁଖ୍ୟମନ୍ତ୍ରୀ ନୀତିନ୍ ପଟେଲ ମନୋନୀତ ।

୮। ୮ --ଦୀର୍ଘ ବର୍ଷ ପରେ ରାଜ୍ୟସଭାରେ ସାମଗ୍ରୀ ଓ ସେବାକର (ଜିଏସ୍‌ଟି) ବିଲ୍ ଲୋକସଭାରେ ଗୃହୀତ ।

୯। ୮ — ଅରୁଣାଚଳର ପୂର୍ବତନ ମୁଖ୍ୟମନ୍ତ୍ରୀ ଖଲିକୋ ପଲ୍‌ଙ୍କ ଆତ୍ମହତ୍ୟା ।

-- ଦୀର୍ଘ ୧୬ ବର୍ଷର ଅନାହାର ପରେ ସାମାଜିକ କର୍ମୀ ତଥା ଲୌହମାନବୀ ଇରୋମ୍ ଚାନୁ ଶର୍ମିଳା ଅନଶନ ଭାଙ୍ଗିଛନ୍ତି ।

୧୦। ୮ --ତାମିଲ୍‌ନାଡୁର ତିରୁନେଲ୍‌ଭେଲିରେ ନିର୍ମିତ ୧୦୦୦ ମେଗାଓ୍ୱାଟ୍ କ୍ଷମତା ବିଶିଷ୍ଟ କୁଡନ୍‌କୁଲମ ଆଣବିକ ଶକ୍ତିକେନ୍ଦ୍ରର ପ୍ରଥମ ୟୁନିଟ୍ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ।

୧୭। ୮ — ରିଓ ଅଲମ୍ପିକ୍‌ରେ ମଲ୍ଲଯୋଦ୍ଧା ସାକ୍ଷୀ ମଲ୍ଲିକ୍ ଭାରତ ପାଇଁ ପ୍ରଥମ ବ୍ରୋଞ୍ଜ୍ ପଦକ ଏବଂ ପି.ଭି. ସିନ୍ଧୁଙ୍କର ମହିଳା ବ୍ୟାଡ୍‌ମିଣ୍ଟନ୍ ଫାଇନାଲ୍‌ରେ ରୌପ୍ୟ ପଦକ ହାସଲ ।

୧୮। ୮ -- ରାଜସ୍ଥାନର ଜାତୀୟ ଅଭୟାରଣ୍ୟରେ ରନ୍ଥମ୍ବୋର୍‌ର ବ୍ୟାଘ୍ର ରାଣୀ 'ମଚ୍ଛଲୀ'ର ୧୯ ବର୍ଷରେ ମୃତ୍ୟୁ ।

## ବିଦେଶ ଖବର

୧୮। ୭-- ତୁର୍କୀରେ ବିଦ୍ରୋହୀ ସେନାଙ୍କର କ୍ଷମତା ଦଖଲ ଉଦ୍ୟମବେଳେ ସାଧାରଣ ଜନତା ଓ ରାଷ୍ଟ୍ରପତିଙ୍କ ସମର୍ଥକଙ୍କ ଦ୍ୱାରା ୬୦୦୦ ବିଦ୍ରୋହୀ ଗିରଫ ଏବଂ ୨୭୪୫ଜଣ ବିଚାରପତି ବିତାଡ଼ିତ ।

୨୩। ୭-- ନେପାଳ ପ୍ରଧାନମନ୍ତ୍ରୀ କେ.ପି. ଓଲିଙ୍କ ଇସ୍ତଫା ପ୍ରଦାନ ।

୨୭। ୭— ଆମେରିକା ରାଷ୍ଟ୍ରପତି ନିର୍ବାଚନ ପାଇଁ ହିଲାରୀ କ୍ଲିଣ୍ଟନ୍ ଡେମୋକ୍ରାଟିକ୍ ପ୍ରାର୍ଥୀ ମନୋନୀତ ।

୫। ୮-- ବ୍ରାଜିଲ୍‌ର ରିଓ-ଡି-ଜେନେରୋ ସହରରେ ଅଲମ୍ପିକ୍ ଆରମ୍ଭ । ଏଥିରେ ୪୨ଟି କ୍ରୀଡ଼ାରେ ୨୦୬ଟି ଦେଶର ମୋଟ ୧୦,୫୦୦ଜଣ ପ୍ରତିଯୋଗୀ ଭାଗ ନେବେ । ଏହା ୨୧ ତାରିଖ ପର୍ଯ୍ୟନ୍ତ ଚାଲିବ । (ଅବଶିଷ୍ଟ ୫୨ ପୃଷ୍ଠାରେ)

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597